# ନିଶବ୍ଦରେ...............

(କବିତା ସଂକଳନ)

**ଅପର୍ଣ୍ଣା ମହାନ୍ତି**

ପ୍ରକାଶକ :

**ବତୀଘର**

ଚଣ୍ଡୀଖୋଲ ଛକ, ଭଗ୍ନା-ଧାନମଣ୍ଡଳ, ଯାଜପୁର

ମୁଦ୍ରଣ : **ମହାବୀର ପ୍ରେସ୍**

ଚଣ୍ଡୀଖୋଲ ଛକ, ଯାଜପୁର

ପ୍ରଥମ ପ୍ରକାଶ—୧୯୯୭

**ମୂଲ୍ୟ—ପଚଶ ଟଙ୍କା ମାତ୍ର**

# NISABDARE...............

(An anthology of poetry)

by :

**Aparna Mohanty**

Publisher :

**BATIGHAR**

Chandikhol Chhack, Jajpur

Printed at :

**Mahabir Press**

Chandikhole Chhak, Jajpur

First Edition—1997

**Price-Rupees Twenty five only**

**ମୋର କୃତଜ୍ଞତା—**

ଏ ସମସ୍ତ କବିତାକୁ ନିଜ ପତ୍ରିକାରେ ସ୍ଥାନିତ କରି ଯେଉଁ ପତ୍ରିକା ସମ୍ପାଦକମାନେ ମୋ କବିତାକୁ ପାଠକମାନଙ୍କର ଶ୍ରଦ୍ଧାଭାଜନ କରାଇଛନ୍ତି ସେମାନଙ୍କୁ ଓ ମୋର ପ୍ରକାଶକ ବନ୍ଧୁ **ଶ୍ରୀ ପ୍ରିୟନାଥ ମହାପାତ୍ରଙ୍କୁ**··· ।

# ସୂଚୀ

# ॥ ଆଘାତ ॥

ଆଗ୍ନେୟାସ୍ତ୍ର
ବରୁଣାସ୍ତ୍ର
ବ୍ରହ୍ମାସ୍ତ୍ର
କି
ଅଣୁ ଅସ୍ତ୍ରଠାରୁ
ଅଦ୍ଭୁତ କୌଶଳରେ ତିଆରି
ଏଇ ଶବ୍ଦାସ୍ତ୍ର....... ।

ଅଧିକ ଭୟଙ୍କର
ଅଦ୍ଭୁତ ଧ୍ୱଂସମୁଖୀ
ଆଘାତ ଓ ପ୍ରତି ଆଘାତ ପାଇଁ
ପ୍ରସ୍ତୁତ ହେଲାବେଳେ....।

ଏ ଆଘାତରେ
ଭୁଷୁଡ଼ିପଡ଼େନା କୋଠାବାଡ଼ି
ନିଶ୍ଚିହ୍ନ ହୁଏନା ଜନପଦ
କିମ୍ବା
ତେଜସ୍କ୍ରିୟ ରଶ୍ମି ଯୋଗୁଁ
ପଙ୍ଗୁ ହୋଇଯାଏନା
ବଂଶାବଳୀ.... ।

ଖାଲି ଯା

ଜୀବନ ପରି ଦିଶୁଥିବା

ଗ୍ରନ୍ଥି ଭିତରୁ

ନିଭୃତରେ ମରିଯାଉଥାଏ ଜୀବନ.... ।

ସଙ୍ଗୀତରୁ ମରିଯାଉଥାଏ ସୁର

ଫୁଲରୁ ବାସ୍ନା

ଶିଶିରରୁ ଶୀତଳତା.... ।

ଏତେ ସୂକ୍ଷ୍ମ

ଏ ଆଘାତ ଯେ

ସବୁ ଠିକ୍ ଥିଲାପରି ଲାଗେ

କିନ୍ତୁ

ସବୁ ଶେଷ ହୋଇଯାଇଥାଏ.... ।

କଦବା କ୍ୱଚିତ

ବିଶ୍ୱମସ୍ତ ବିସ୍ତାର ନେଇ

କବିତା ଠିଆହୋଇଯାଏ

ଏ ରଣକ୍ଷେତ୍ରର

କେନ୍ଦ୍ର ବିନ୍ଦୁରେ.... ।

ଏବଂ

ଶବ୍ଦର ସବୁ ତୀକ୍ଷ୍ଣ ତମ

ଆଘାତ/ପ୍ରତି ଆଘାତ

ନରମ ଫୁଲମାଳଟିଏ ହୋଇ

ଝୁଲିପଡ଼ନ୍ତି

ତା ଗଳାରେ.... ।

—*—

## ॥ ଲକ୍ଷ୍ମୀ ॥

ଆସିଛୁ ଯଦି
ଏ........,

ତତେ ଟିକେ
ଝଲକଟେ ବୁଲେଇ
ଦେଖେଇ ଦିଏ........
ଏ ବଜାର........
ଏ ସହର........ ।

ଦେଖି ଯା
ତୁ ଆସିବୁ ବୋଲି
ସାହିବସ୍ତିରେ ଆଜି
କି ଆଡ଼ମ୍ବର !!

ହାତରେ ଭୁଜାଲି ଧରି
ମଶାହେଲଣି ବୃଦ୍ଧା,
ଝଟିରୁ ତୁହାକୁ ତୁହା
ଝଡ଼ିଯାଉଛି ମାଳ୍
ବସ୍ତିରେ ରାତଅଧିଆ
ଭିଡ଼ା ହେଲଣି ବୋମା,

୩.
କାନଫଟା ମାଇକ୍
ଆକାଶରୁଆଁ ଛୋରଣ,
ଜମାଣିଆ ମେଲେଡ଼ି ହାଙ୍କୁ
ଭକ୍ତଙ୍କର ଡଗମଗ ଚୂଳ
ନାଲି,ସିନ୍ଦୂର କଳା
ଅଛି ଟୁଲୁ ଟୁଲୁ ନାଲିଆଖି
କି ମନୋହର !!

ଖାଲି ଯା
ଦୀନଦୁଃଖୀଙ୍କ ପ୍ରାଣ
କମ୍ପୁଛି, ଥରହର.......ଥରହର....... ।

କାଆଁଳ ପଣ ନାଚୁଚି,
ରୁ ଆସିଲେ
ରଡ଼ାବର୍ଷ ପଣ
ଫୁଟିଉଠୁଥିଲା ସକାଳ....... ।

ଦୋର କୁନ କୁନ
ପାଦ ଥୋଇଲେ ହିଁ
ଲିପା ଗୋବରରେ
ଚହଟିଉଠୁଥିଲା ଦାଣ୍ଡ ।

ଧାଡ଼ି ଧାଡ଼ି ଧାନଶିଁଷା
ପହୁଅଁ-ମଞ୍ଚର ଖୋଟିରେ
ଝିଟକୁଥିଲା କାଠ ।

ଦନ୍ଧପଖାଳର ଅଦାଛୁଙ୍କ
ଆଉ ଛେନାପୁର ଝରଡ଼ାର
ବାସ୍ନାରେ........
ମହକୁଥିଲା କୋଠିଘର........ ।

ନୂଆବୋଉର ଓଢ଼ଣା
କ ବୋଉର ହକଦା ଗୁରୁଗୁରୁ
ପାପୁଲିରୁ........
ଚନ୍ଦ୍ରପୁଳନା ଓହ୍ଲେଇ ପଡ଼ୁଥିଲୁ ଭୂ
ପୃଷ୍ଠ କରଦେଇଥିଲୁ
ଘଣ୍ଟ ଭିକାରୀଙ୍କ ଥଳ.... ।

ଏବକୁ
କାହିଁକ ଏମିତ ବଦଳିଗଲୁ ଯେ,

ତୋ'ର ବକ୍ରଦୃଷ୍ଟିରେ
ଷ୍ଟୋଭ୍ ଫାଟି, କେବେଠୁଁ
ଜଳିଗଲୁଣି ନୂଆବୋଉର
ସୁନାଦେହ.... ।
ବୋଉ ଆଖିରେ
ମାଡ଼ିଯାଇଛି ସୁନାର ପରଳ ।
ଯେତେକ ତଣ୍ଟିକଟା
ଓ ଦଲାଲଙ୍କ ହାତଧର
ତୁ କାଳେ ଭଲ
ନାଚ ଶିଖିଲୁଣି ଏବେ,
ଧାନବେଣ୍ଟି କ ଜଆଧାନରେ ଭରା
ମାଣଟିଏ ନୁହେଁ ।

ବିଦେଶୀ ବ୍ୟାଙ୍କ୍ ଏକାଉଣ୍ଟ
ହେଲଣି ତୋର
ନୂଆ ପରିଚୟ !!

ଚଞ୍ଚଳା....
ଝୁଟ୍, ମୋ ସାନକୁହା ମାନ୍,
କ'ଣ ମିଳିବ ଏ ସତ୍ୟାନାଶୀ ଦେଶରୁ ?

ଆସିବ୍ ଯଦି
ଯା ଟିକେ ବୁଲି ଆସିବୁ
ଶ୍ରୀସ୍ତା ସେଣ୍ଡ୍ରାଲୁଣୀ ଘରୁଁ.... ।

କେତ୍ ହାବେଳି ଗ୍ରାମୀଟି ତା'ର
ବାଧ୍ୟକରେ ପଡ଼ିଛି ବହୁତ ଦନ୍ତୁଁ.... ।
ଛନଟା ଲୁଅ କାଲୁବାଲୁ ଶେକରେ
ନାଇଥି ଗାତରେ....
ସେ ହୋଷ୍ଟାଣ୍ଡର ଅନ୍ଧାର କୋଣରେ
ମଧୁଆ କଣ୍ଡକ୍ଟରଟା ପାଖରେ
ଥାଏ ସେ....
ମୋଟେ ଟଙ୍କା ପାଞ୍ଚଟି ପାଇଁ.... ।

ପାରିବୁ ଯଦି,
ତା'ର ପାଖରେ ଠିଆ ହୋଇଯା
ଦଣ୍ଡେ.... । ଦେଖିବୁ
କେତେ ଐଶ୍ୱର୍ଯ୍ୟରେ ଝଲସି ଉଠିବ
ତୋ'ର ବରଦ ମୁଦ୍ରା.... ।
କେମିତି ଲକ୍ଷ୍ମୀପରି ଦିଶିବ ତୋ ରୂପ !!

## ॥ ଜହ୍ନର ଲୁହ ॥

ଦାଣ୍ଡରେ
କଇଁଫୁଲର ଝୋଟି ଅଙ୍କିଦେଇ
ଠିଆପୁଚି ନାରଙ୍ଗ ଲୋ' ଖେଳ ।

ଚନ୍ଦ୍ରଉଦିଆ ବରଷିଏ ପାଇଁ
ଚନ୍ଦନ ପାଟି ପିନ୍ଧି
ସୂର୍ଯ୍ୟଙ୍କୁ, ଚନ୍ଦ୍ରଙ୍କୁ
ଅର୍ଘ୍ୟ ଟେକିଦେବାର
ସେ ପରମ ବିଶ୍ୱାସର ବେଳ ।

ଗଙ୍ଗଶିଉଳି ବାସ୍ନାରେ
ମନ୍ଦ ମନ୍ଦ ଜହ୍ନଧୂଆ ରାତି
ପ୍ରଥମ ପ୍ରଣୟ ପରି
ସୁକୁମାର ସୁଠାମ ସରଳ ।

ଜହ୍ନ ସେଠି ହସୁଥିଲା
ମୋ ବୋଉର ମୁହଁ ପରି
ଅକ୍ଷୀଣ ତା
ମାସ୍ତାଘେର ମମତାର କୋଳ ।

ଗାଁ ଗ୍ରାଉଣ୍ଡ ବାଡ଼ରୁ
ମୁଁ ଖାଲି ଝାପ୍‌ସା ଝାପ୍‌ସା
ସ୍ୱପ୍ନପରି ଲାଗେ ।

ପୂଜା ଆରାଧନା ପାଇଁ
ଯେତେ ଆୟୋଜନ
ଏଠି କେତେ ଭୟଙ୍କର

କର୍ମମ ଅଶ୍ଳୀଳ !!
ସନ୍ଧ୍ୟା ଛଅଟା ବେଳଠୁଁ
ଆରମ୍ଭ ହୋଇଯାଉଛି
ମାତାଲର ସ୍ବାଦା ଅଭିଯାନ
ତୁଣ୍ଡରେ ଅକଥ୍ୟ ଭାଷା
ପାଦ ଟଳ ଟଳ.... ।

ମାଇକ୍‌ରେ କାନଫଟା
ଅସଭ୍ୟ ଗୀତର ସ୍ୱର
ଆଖିକୁ ଜଳାଉଥିବା
ଫ୍ଲୁରୋସେଣ୍ଟ, ନିଅନ୍ ଆଲୁଅ
ପବନର ନିଶ୍ୱାସ ବି
ବୁଡ଼ି ବୁଡ଼ି ଯାଏ
ପେଟ୍ରୋଲ ଗନ୍ଧରେ.... ।

ଜହ୍ନକୁ ଦେଖିବା ପାଇଁ
ସଂତର୍ପଣେ ଅଳ୍ପଟିକେ
ଝର୍କା ମେଲି କଲି.... ।
ଅଭଦ୍ର ଘୁସୁର ଶବ୍ଦ
ସାଏଁ କରି ଢ଼େଲ୍ ଝେଣ୍ଟିର
ଅନୁପ୍ରବେଶ ଭିତରେ.... ।

କୁଆଁର ପୁନେଇଁ ଜହ୍ନ
ଦିଶୁଥିଲା
ଛିତସ୍ତ ପାଣ୍ଡୁର ବିବର୍ଣ୍ଣ
ଆସନ୍ନ ଧର୍ଷଣ ଭୟେ
ଅଶ୍ରୁ ଛଳ ଛଳ.... ।

—*—

## ॥ ବୋଇତ ବନ୍ଦାଣ ॥

ରହ କ୍ଷଣେ ସାଧବ କୁମର
ଏ ଘାଟରେ ବାନ୍ଧନାଇଁ ତରୀ
ଏଠି ଯେଉଁ ଗୃଲଛୁ ବେପାର
ଦେଖି ତୁମେ ଲଜେ ଯିବ ମରି ।

ପାଲଟଣା ତୁମ ବୋଇତରେ
ଭରି କେତେ ବିଚିତ୍ର ପସରା
ସୁଗର ପାଟ ମଠା ଶାଢ଼ୀ
ସାଧୁତାର ତାରକସି ଝରା....

କଣ୍ଠରେ ଆ, କା, ମା, ଭୈ
ବାହୁରେ ଉଦ୍ୟତ ତରବାରୀ
ନାଡ଼ିହୀନ ବୋମ୍ବାଟିଆ ଦେଖି
ତୁମେ କେବେ ଯାଇନାହଁ ଡରି ।

ସାଧୁମନେ ସାଧୁ ଉପାୟରେ
କର ସଦା ଲକ୍ଷ୍ମୀ ଆରାଧନା
ତେଣୁ ତୁମ ସାଧବ ଉପାଧି
ସାର୍ଥକ ହୋଇଅଛୁ ସିନା ।

ଅଜି କାଲୁ ତୁମର ଦାମ୍ଭାଦ
ଟେକ ଧରେ ଦୁର୍ନୀତିର ଛଡ
କଳାଟଙ୍କା କାରବାର ଚାଲେ
ବଣିକରେ ଏଠି ଧନଗଢ ।

ଅଭିଜାତ ହୋଟେଲ କକ୍ଷରେ
ବହିଯାଏ ଯୌବନର ସୁଅ
ବାର ବାର ବନ୍ଦୀ ହୋଇଯାଏ
ସୁନାରଙ୍ଗୀ ସାଧବାଣୀ ଦେହ ।

ମଦମାଂସ ନାଚର ଇଙ୍ଗିତ
ଡାକିରଖି ଖେଳେ ଯିଏ ଖେଳ
ସିଏ ସେତେ ସଫଳ ବେପାରୀ
ବଢ଼ିଚାଲେ ତା'ର ପୁଞ୍ଜିମୂଳ ।

ସର୍ବସ୍ୱାନ୍ତ ଶ୍ରମିକ ବ୍ୟକ୍ତି
କରୁଛନ୍ତି ଅସାଧୁ ବେପାର
ମନ୍ତ୍ରୀ, ତନ୍ତ୍ରୀ ଅଥବା ବାବାଜୀ
ବୁଦ୍ଧିଜୀବ, ଶିକ୍ଷକ, ଡାକ୍ତର ।

ମହାଠକ ବେଲଗ ବଣିକ
ଲକ୍ଷ-ମିଛେ ଉଡାଏ ଟଙ୍କା
ମହାତ୍ମାଙ୍କର ଶାସନ ଗାଦିରେ
ବସିବରେ ତାହାର ଦଲାଲ ।

ଏଠି ଦେଖି ଭବ୍ୟ ଅଟ୍ଟାଳିକା
ଦୃଷ୍ଟି ଫେରି ହେବ ନାହିଁ ଆଉ
ଏବେ ତହୁଁ ଦସ୍ତାକୁ ସାଧିବ
ମୁକ୍ତହସ୍ତ କେହ୍ନ ମହାବାହୁ ।

ଛୁଗୁଲିର କନ୍ଧଯାଏ ସିଏ
ଗନ୍ଧର୍ବ କିନ୍ନୁ ଶୋଷି ଶୋଷି
ଦେଖ ଦେଖ କଳାବଜାରୀଙ୍କ
କେତେ ବଡ଼ କୋଠା ଉଠେ ହସି !

ତୁମେ ଏଠି ଭାଙ୍ଗିଲେ ବୋଇତ
ଦଣ୍ଡକେ ହୋଇବ ଦେବାଳିଆ
ତୁମେ ତ ଶିଖିନ ଧପ୍ ପକାଇ
ଏ କଳିଙ୍ଗ ତୁମ ପାଇଁ ନୂଆ ।

ଆମେ ଖୁସି ସୋଲଭେଲା ଧର
ପାଳି ମିଛ ବୋଇତ ବନ୍ଦାଣ
ସତଠାରୁ ସୁନ୍ଦ ନରିପଦ
ଫେରିଯାଅ, ତୁମକୁ ମୋ ଋଣ ।

—*—

# ॥ ପ୍ରଶ୍ନ ॥

ସୂର୍ଯ୍ୟ
ଆକାଶ
ନଦୀ
ପୃଥିବୀ
ବନସ୍ପତି
ଏମାନଙ୍କର ଧର୍ମ କ'ଣ ?
ଫୁଲ
ଶିଶୁ
ଢେଉ
ଜ୍ୟୋତ୍ସ୍ନା
ଏମାନଙ୍କର ଧର୍ମ କ'ଣ ?
କାହିଁକି ବଞ୍ଚିହୁଏନା ଏମାନଙ୍କୁ ବ୍ୟତୀତ ?
କାହିଁକି ଏମାନଙ୍କୁ ନେଇ
ଜୀବନ ଭରପୂର ହୋଇଯାଏ ଆନନ୍ଦରେ ?
ଏବଂ
ସେ ପୁରୋହିତ ହେଉ କି ମୌଲଭୀ ହେଉ
ଧର୍ମର ଦ୍ୱାହି ଦେଇ
ମଣିଷକୁ ମଣିଷ ବିରୋଧରେ
ଚଢ଼ାଉଥିବା ମତାଉଥିବା
ଦଲାଲ୍‌ର ଧର୍ମ କ'ଣ ?

ବାହ୍ନିକ ସ୍ତ୍ରୀ'ଙ୍କ ସ୍ତନ ପଡ଼ିଲେ
ସ୍ତନ ଥରିଯାଏ ଭୟରେ
ଶିଶୁର ରକ୍ତରେ, କୁଡ଼ୁବୁଡ଼ୁ ହୋଇଯାଏ ମାଟି ?
ଓ ହେଇ ମାଟିକୁ ନେଇ
ସିଂହାସନ ଗଢ଼ୁଥାଏ ଦଲାଲ !!

ନୋଟ ହେଉ
ଭୋଟ୍ ହେଉ
କି ରକ୍ତ ହେଉ....
ଶୋଷିବାହିଁ ଦଲାଲର ଧର୍ମ
ମଣିଷର କୋମଳତମ
ଆବେଗକୁ ବ୍ୟବହାର କରି
ମଣିଷ ମରାଇବାହିଁ
ଦଲାଲ ର ଧର୍ମ.... ।
ହେଇଥିପାଇଁ ସେ ବହୁରୂପୀ
ତା'ର ଅନେକ୍ ରୂପ
ଅନେକ୍ ନାମ.... ।

ତେବେ କେଉଁ ଧର୍ମକୁ ମାନିନେବା ଆମେ ?
ସୂର୍ଯ୍ୟର....
ଫୁଲର....
ନାଁ ଦଲାଲ୍ ର.... ??

—*—

# ॥ ପାଚେରୀ ॥

ମାସସାରା....
ହବିଷ୍ୟାନ୍ନ....ଦେବତା ଦର୍ଶନ
ବୁଡ଼ପରା....ବଡ଼ଓଷା
ସୋଳଡ଼ଙ୍ଗା ଭସା....
ଦକ୍ଷିଣା ପଇସା ପାଇଁ
ପଣ୍ଡାଙ୍କର ସେତେ ଧରାପରା
ସତେ କ'ଣ ଏଇଥିରେ
ଭରିଯାଏ ପୁଣ୍ୟର ପସରା ??

× × ×

ମାସସାରା....
ରୋଜାରଖା....
ପବିତ୍ର ନମାଜ ପଢ଼ା
ଚନ୍ଦ୍ର ଦେଖା
ମୁବାରକ୍ ଦୁଆ-ନିଆ
ଅତିଥି ସଙ୍କୁଳା...
ଏତିକରେ....
ଜନ୍ନତ୍ ଦୁଆର ହୁଏ
ସତରେ ମୁକୁଳା.... ?

\+ + +

ମଣିଷ ପାଇଁକି ଯଦ୍ଧ
ପଗ୍ଣେ ସଙ୍ଗୀତ ନାଇଁ ଟିକିଏ ଦରଦ ।
ଧର୍ମ, ପୁଣ୍ୟ ଲେଢ଼େ ଯଦ୍ଧ
କୋଟି କୋଟି ଅପମୃତ୍ୟୁ
ହିଂସାର ଶାର୍ଦ୍ଦୁଳ ଯନ୍ତ
ନାମାବଳୀ ଛାଡ଼ି ହୋଇ
ଘୂରବୁଲେ ଚାଖିବାକୁ ରକ୍ତର ସ୍ୱାଦ ।

ପୁଣ୍ୟ କାହିଁ, ମୋକ୍ଷ କାହିଁ ସେଠି ?
ପାପର କବଳ ଗ୍ରସ୍ତା ଆଚ୍ଛାଦିତ
ଅନ୍ଧକାର ଖାଲି....
ଧର୍ମନାମେ କେବଳ ପାଟେଶ୍ୱରଗଢ଼ା
କେବଳ ବିଭେଦ.... ।

—*—

# ॥ ଧର୍ମମାସ ॥

ଏ ଯେ କାର୍ତ୍ତିକ ଧର୍ମମାସ ।

ଲଗିପଡ଼ିଛନ୍ତି ବଡ଼ଦଣ୍ଡୀ ନେତେ
ଧର୍ମର ହେଉଛି ସତ୍ୟାନାଶ ।

ମଣିଷ ପଛକେ ମରିହଜି ଯାଉ
ରୋଗ ଅନାଟନ ଅନାହାରେ
ସୀତା ପଛେ ଆଜି ଧର୍ଷିତା ହେଉ
ଷଡ୍ ଦାଣ୍ଡେ ଦାନ ଦ' ପଦ୍ମରେ
ସମ ଖେଳୁଛନ୍ତି ଦଳବଳ ଧରି
ଗଢ଼ିବେ ଝଣ୍ଟିଏ ନଜର ବାସ ।
ଏ ଯେ କାର୍ତ୍ତିକ ଧର୍ମମାସ ।

ଗୀତା, ବାଇବେଲ କୋରାନ୍ ର କଥା
କୁଆଡ଼େ ଗଲଣି ଚୁଲିକୁ ଆଜି
ଶତ୍ରୁତା ଯେତେ ବଢ଼ିବ ସେ ପାଇଁ
ସବୁ ପ୍ରରୋଚିତ, ମୂର୍ଖା ରଙ୍କ ।
ଧର୍ମ ନାମରେ ପିଶାଚମାନଙ୍କ
ଜାଗିଛି ରକ୍ତ ଚୁଷିବା ଶୋଷ ।
ଏ ଯେ କାର୍ତ୍ତିକ ଧର୍ମମାସ ।

ସାନ୍ଧବସ୍ତିରେ ଖଇର ପିଠିରେ
ହଠ ଭୂଷ୍‌ ଥିବ ପଛରୁ ଛୁରୀ,
କଅଁଳା ଶିଶୁର ଚୁଣ୍ଡା କଲିଜା
ରାସ୍ତା ଧୂଳିରେ ଉଠିବ ଥର
ଘରେ ଘରେ ଆହା ବଢ଼ିଲ୍‌ ହିଁ ଅଙ୍କ
ଲୁଣ୍ଠି ଦେହେ ନଥିବ ବାସ
ଏ ଯେ କାର୍ତ୍ତିକ ଧର୍ମମାସ ।

ରକ୍ତ ଚହଟା ଆଖିର କି ଜାତ ?
ହିନ୍ଦୁ ନା ସିଏ ମୁସଲମାନ୍ ?
ଧର୍ଷିତା ଏଇ ବାଳିକାର ଶବ
ଅହଲ୍ୟା ନା ସିଏ ଅମୀର୍‌ଜାନ୍ ?
ଦଳାଚକଟା ଏ ଶିଶୁର ଶରୀର
କି ଜାତ ଥିଲା ତା ଦରେଷ୍ଠି ହସ ?
ଏ ଯେ କାର୍ତ୍ତିକ ଧର୍ମମାସ ।

ଚଉହାସେ ଖାଲି ବାବର ନାହିଁତ
ଜୟଚନ୍ଦ୍ରର ନାଆଁ ବି ଅଛି
ଭାଇ ପାଦତଳେ ଖୋଳେ ସିଏ ଗାତ
ଆପଣା ତୁଚ୍ଛ ସ୍ୱାର୍ଥ ଅଛି ।
ସ୍ୱାର୍ଥାନ୍ଧର ଧର୍ମ ବିଭେଦ
ଜାତରେ ସେ ସଇତାନ୍‌ର ଦାସ ।
ଏ ଯେ କାର୍ତ୍ତିକ ଧର୍ମମାସ ।

ଧର୍ମଯୁଦ୍ଧେ, ଜେହାଦ୍‌ରେ ଯେତେ
ନୀରକ୍ତ—ସରଳ ହେବେ ଶହୀଦ୍
ଧୂର୍ତ୍ତ ନେତାଏ ଗାଦି ମାଣ୍ଡନେବେ
ଲୋକ ଦେଖାଣିଆ ଦେଖାଇ କାନ୍ଦ୍
ନେତାଙ୍କର ସୁଖମାତ୍ର ହେଲବେଳେ
ଜନତାଙ୍କ ହେବ ସର୍ବନାଶ ।
ଏ ଯେ ଜାତ୍ରିକ ଧର୍ମ୍ମ ପ ।

—*—

# ॥ କର୍ଫ୍ୟୁ ॥

ଡାଲିଠାରୁଁ....
ଗୁମ୍‌ଗୁମ୍‌ ସନ୍ଧ୍ୟା ସହର.... ।

ମନ୍ଦିରେ ମସ୍‌ଜିଦରେ ତାଲା.... ।
ସାଇରେନ....
ଫ୍ଲାଗ୍‌ମାର୍ଚ୍ଚ
ଫାଙ୍କା ଗଳି ଗଳିକନ୍ଦିରେ ଅନ୍ଧାର ଭିତରେ.... ।

ଉଡୁଛନ୍ତି
ପିଶାଚର ଡେଣାପରି
କଣିକଳା ରାତି....,
ସାପ ଫଣାପରି କଳା
ଲମ୍ବ ଲମ୍ବ ରାସ୍ତାକୁ ସକାଳ
ଗ୍ରାସୁଛି....
କ୍ଷୁଧିତ ଅଜଗରର
ଗଣ୍ଡିପରି ଲମ୍ବା ଦ୍ୱିପ୍ରହର.... ।

ଏଇ ମୋଡ଼ଟି ଦନକ ଅଂଗରୁ
ସକାଳ ହେଉମ ଟେ
କଳିମୁଣ୍ଡର ଛିଟାପିଅଳ ଓ
ବାଇଗିଣୀ ରାସ୍ତାରେ
ଛିଟିପଡ଼ିଥିଲ ରକ୍ତ.... ।

ଅନ୍ଧାର ନାଗିଣୀ
ଡାହିଏ ଫଣାକୁ ଠୁଙ୍କି ଦେଇ
ବସ୍ତାନି ଟେକି ଦୌଡ଼ୁଥିଲା ସ୍କୁଲ.... ।

ଟ୍ରଲି ଡକ୍‌ଯାରେ
ମାଲ ଲଦି ଧାଉଁଥିଲା ଦଶରଥ.... ।
ମିଠା ଦୋକାନର ପଚପଟେ
ବତୁରି ଯୋଗି ଆଉ ଝର ବାଟ୍ ବାଟ୍
ପୁଅ କଥା କହି
କଳ କଳ ହସି ଦେଉଥିଲା କୌଶଲ୍ୟା.... ।

ଓପଟବେଳା
ଝୁଙ୍କୁର ଲଗା ଶକ୍‌ସାଟିଏ
ଠିଆହେଉଥିଲା ଗଳି ଆଗରେ .... ।
ଅଲମିଆଁ ବୁଲେଇ ନେଇଯାଉଥିଲା
ପୁଅ ଚନ୍ଦ୍ରମା ଆଉ
ଦଶରଥଆ ପୁଅ ରାମକୁ
ଏକା ସାଙ୍ଗରେ....ଷ୍ଟାଡ଼ିୟମ ଅଡ଼େ ।

ସାଇଲେକ ବେଳୁ
କ୍ରିକା ପଞ୍ଚ ଠୋକ୍‌ରେ
ବାଡ଼ି ଦେଉଥିଲେ ବେଶୀ ବେଶୀ
ଦହିବର ଆଲୁଦମ୍....
ମହାଖର୍ଚ୍ଚ ଟମ୍ ଓ ରହିମ୍
ଆଜି ଅଧିକା କ’ଣ କେଉଡ଼ା
ଏ ଦୁନିଆଁରେ !!

× × ×

ସେ' ଦିନ ହେଉଛି
ଦଶରଥ ଟ୍ରଲି ବନ୍ଦ
ଅଲନିଅଁ ଟେକ୍ସା ବନ୍ଦ
କୌଶଲ୍ୟାର ବଣବଟା ବନ୍ଦ.... ।

ଧିଲିଭର ଡେକ୍‌ଟି ଗୁଡ଼ାକ
କୋଣରେ ଉଗଡ଼ି ଦେଇ
ଗାମୁଛା ପାରି
ଓପାସରେ ଶୋଇ ରହିଚ କାନ୍ଦି'କା ।

କେଉଁ ମୁହଁକୁ ଗୃହିଁଲେ
ଶୋକ ହେଲଣି ବୋଲି
କହିବାକୁ ଡର ମାଡ଼ୁଚି ରାମକୁ.... ।
କଲିଯ ଛାଡ଼ିବା ଗୁଲକୁ
ନଅଁ ପଢ଼ି, ଫୋଟକା ହେଉଯାଉଚି
ରହିମ୍‌ର ପିଠି.... ।

ଦୁହେଁ ଭାବୁଛନ୍ତି,
କିଏ ସେ ବଦମାସ୍ ରାମ ?
କୋଉଠି ସେ ଶଇତାନ୍ ରହିମ ?
ତାଙ୍କ ଘର ରହିଲେ କେତେ ?
ଭାଙ୍ଗିଲେ କେତେ ?

କାହିଁକି ସେଇଥି ପାଇଁ
ଏତେ ବାଲୁବାଲୁ ହେବେ
ଦୁହିଁଙ୍କର ବାପା-ମାଆ
କାହିଁକି ସେଇଥିପାଇଁ
ଦି' ଦିନ ହେଲାଣି
ଚୁଲ୍ଲୀ ଜଳୁନି
ତାଙ୍କ ଦୁହିଁଙ୍କ ଘରେ ଏଠି !

—*—

## ॥ ଶବ୍ଦଟିଏ... ॥

ରକ୍ତରେ ଲାଲ୍ ହୋଇଯାଇଥିବା
ମୁକ୍ତିର ଅଭିଳାଷରେ ଜଳି ଉଠୁଥିବା
ପ୍ରୀତିର ନିବିଡ଼ତାରେ ଦୃଢ଼ ହୋଇଥିବା
ଶବ୍ଦଟିଏ ମୋର ଦରକାର.... ।
ସୂଚ୍ୟଗ୍ର ଠାରୁ ସୂକ୍ଷ୍ମତର ତୀକ୍ଷ୍ଣତର
ଅସିଧାର ଠାରୁ ଶାଣିତ,
ଏବଂ ଗଙ୍ଗଶିଉଳି ଠାରୁ କୋମଳ,
ଛାକରଠୁଁ ବି ଓଦା
ହୃଦୟଠାରୁ ଅଧିକ ସ୍ପନ୍ଦନଶୀଳ.
ଶବ୍ଦଟିଏ.... ।
ମୁଁ ଖୋଜି ଚାଲିଛି କେଉଁ ଅନାଦି କାଳରୁ.... ।

ନିହାଣ ମୁନରେ
ପଥରର ମୂର୍ତ୍ତି ଗଢ଼ିଲା ଭାଙ୍ଗିଲା ପରି
ମୁଁ ଗଢ଼ି ଚାଲିଛି, ଭାଙ୍ଗି ଚାଲିଛି ।
ଶବ୍ଦମାନଙ୍କୁ.... ।

ମୋ ଚାରିପଟେ
କୁଢ଼ କୁଢ଼ ଭଙ୍ଗାପଥର... ।
ପଥରପରି ଶବ୍ଦମାନଙ୍କ ତଳେ
କ୍ରମଶଃ ପୋତି ହୋଇଯାଏ
ମୋର ଅସ୍ତିତ୍ୱ ।

ଗୋଟାଏ ପରିତ୍ୟକ୍ତ ପାହାଡ଼ଉପର
ଦୂରରୁ ଦିଶୁଛି ମୋର ବିଲୁପ୍ତ ସତ୍ତା ।

ତଥାପି, ମୁଁ ଜାଣେ
ମୋର ଈପ୍‌ସିତ ନଦୀଟି
ମୋ ହାତରେ ଧରିଦେବା ମାତ୍ରେ
ଝାଡ଼ଝୁଡ଼ି ହୋଇ
ନିମିଷକରେ ଉଠିବସିବି ମୁଁ ।

ଟିପେ ଧୂଳିପର
ଲୁଅଡ଼େ ପୋଛି ହୋଇଯିବ
ମତେ ତୃପ୍ତି ରଖିଥିବା
ଶିହଳ ଲଗା ପ୍ରସ୍ତର ଶ୍ରେଣୀ ।

ଯେ କୌଣସି ମନ୍ତ୍ର ଧ୍ୱନଠାରୁ....
ଶକ୍ତିଶାଳୀ ହୋଇ
ସାରା ବିଶ୍ୱରେ
ଅନୁରଣିତ ହୋଇ ଉଠିବ
ଜାନ୍ତର....
ସେଇ ନୂତନ ଶବ୍ଦଟି....



# ॥ କବିର କଥା ॥

କି ଯୋଗେ ପ୍ରଭୁ କଲେ କବି
ଆଙ୍କିଲି ବସି ରୂପରଂଛବି
ସ୍ୱପନରେ ଖେଳ—ଶିଖିଲି ନାହିଁ
ମରମ କଥା ଯେ—
ହୋଇ ରାଜାଙ୍କ ଦରବାର
କହିପାରିଲେ ମଧୁର ଗୀତ
ମୁଣ୍ଡରେ ଟେକା ହୋଇବ ମୋର
ପାଆଟ ଛତା ଯେ—୧

ଉଠ୍ କହିଲେ ଉଠୁଥିବି
ବସ୍ କହିଲେ ବସୁଥିବି
ଧାଡ଼ିକି ଧାଡ଼ି ଲେଖିଯିବି ମୁଁ
ଚରିଧା ଗୀତ ଯେ —
ଠାଣିଲେ ଟିକେ ହଜୁର୍ ମୋର
ଦେଖ ମୋ ନଯର ପଯର
ତେବେ ସିନା ଏ କବି ପଣରେ
ବାନ୍ଧିବ ନେତ ଯେ— । ୨ ।

କଣପାରିଲେ ମୂର୍ଖଙ୍କୁ ସ୍ତୁତି
କେବଳ ପଢ଼ିବ ନାହିଁ ବିପତ୍ତି
ନ ପଢ଼ାଇଲ କବି ହେବାର
ପ୍ରଥମ ପାଠ ଯେ— ୩

ନ କରି ପାରି ଉଚିତ ଲଭି
ନା ସ୍ୱଚ୍ଛସ୍ୱଚ୍ଛା ସ୍ୱୀକୃତି କବି
ମନ ମନ୍ଦିରେ ଉଚ୍ଚରେ ବସି
ଦେଖୁଚ ନାହିଁ ଯେ । ୩ ।

ଉତ୍କୃଷ୍ଟ ଏ କଳାର ଦେଶ
ଦେଖ ଆଜି ତା ଉତ୍କର୍ଷ ବେଶ
କଳା କହିଲେ ବୁଝାଏ ଖାଲି
କଳା ବଜାର ଯେ—
କଳାବଦନ ଜୟଗାନ ନାମରେ
ଦିବସ ରାତି ଚାଲେ କେମିତି
ଯୋଡ଼ା ବେପାର ଯେ— । ୪ ।

ଦେଖି କବିର ମୁକ୍ତି ବରଷ
ନ ହୁଏ ତୁମ ସ୍ୱପ୍ନ ଆଦେଶ
ଏମିତି କଥା ଭାବନ୍ତ ସ୍ୱାଇଁ
ସାଜିଚ ଆଜି ହେ....
ନ ଥିଲେ ଦ୍ୱିତୀୟ ଈଶ୍ୱର
କିଏ ତୋଳିବ ଘର ତୁମର
ମାଟି ପଥର ଦେଉଳ ଯେତେ
ପଡ଼ିବ ଭାଜି ହେ— । ୫ ।

—o—

# ଯଦି କହିପାରନ୍ତି... !!

ସବୁ କଥା କହିହୁଏ କି'ଣ ?
ସବୁବେଳେ ଗଣିହୁଏ କି
ସମୟର ସବୁ ପାଦ ଚିହ୍ନ ?

ଲକ୍ଷେ ଚିନ୍ତା
ଅଯୁତ ଭାବନା
ନିୟୁତ ନିୟୁତ କଥା
ଅର୍ବୁଦ ସପନ ।

ଶବ୍ଦଟିଏ, ବାନ୍ଧି ଅଞ୍ଜୁଳିରେ ଧରିବାକୁ
ଅହର୍ନିଶି ଟଳମଳ
ଅସ୍ତିତ୍ୱକୁ ମୋର
ଜାବୁଡ଼ି ଧରିଥାଏ ମୁଁ
ମନ୍ଦର ପର୍ବତର ସେ
ଶିଖରରେ ବସି.... ।
ଚତୁଃପାର୍ଶ୍ୱେ ମୋର
ଦେବତା ଓ ଦାନବଙ୍କ
ବିକଟ ନର୍ତ୍ତନ....
ଫେନାୟିତ ମହାକାଳ
ଅନିଶ୍ଚିତ ପ୍ରତ୍ୟାଶାର ରଣଭୂମି

କିଏ ସ୍ୱାର୍ଥ ?
କିଏ ଅବା ପରମାର୍ଥ
କେତେ ଏ ସମୁଦ୍ର ମନ୍ଥନ.... ... ।

ଏ କ'ଣ ଶୁଭୁଚି ଆଜି
କାହାର ଏ ମର୍ମଭେଦୀ ସ୍ୱର ?

ଲକ୍ଷ କୋଟି ବୁଭୁକ୍ଷିତ
ନିରନ୍ନ କଣ୍ଠର ଆର୍ତ୍ତି
ଅବା ଅମୃତରେ ଅଭିଳାଷୀ
ନିଷ୍ଠୁର ହାତରେ
ଅହରହ ଆକର୍ଷିତ
ଅଯଥା କ୍ଷତ ବିକ୍ଷତ
ବାସୁକୀର
ଅବରୁଦ୍ଧ ବିଷାକ୍ତ ଫୁତ୍କାର !!
ଅମୃତ ପିପାସାରେ
ଏ ଯାଏଁ ସମ୍ଭାଳିଥିବା
ମୋର ଏଇ ସୁକୁମାର ସ୍ଥିତି
ଝିଂଶପଡ଼େ ଅବସନ୍ନ
ଅଚେତନ ହୋଇ ।
ସୁଧାର ମୋହକୁ ଭୁଲି
ମୁଁ ଢୋକିବୁଲେ ଏଣିକି
ସୃଷ୍ଟିର ଏ ସମସ୍ତ ଗରଳ
ପାନକରି—ମୋତେ ମଧ
କରିଦେବ ଜ୍ୱାଳାମୁକ୍ତ
କାହିଁ ସେଇ ପ୍ରିୟତମ
ନୀଳକଣ୍ଠ କାହିଁ.... ??

ଛିଃ....ଛିଃ....

ଇଏ ବୋଝି ସୁଖ

ସତେ ଆନ୍ଦୋଳିତ ଏ

ଶୃଙ୍ଗ ପରେ ବସି

ସ୍ଫୀତ ଦୁଇ ବାହୁ ମେଲ

ଆପଣା ଅହଂକାରକୁ

କୁଣ୍ଢାଇ ଧରବା.... !!

ପାଦପଦ୍ମେ ଝଙ୍ଗି ଯାଉ

ଫାଟିଯାଉ ସ୍ତୁତି....

ଚଳନ୍ତ ଢେଉଁପଡ଼ିଲେ

ଜଡ଼୍ ବୁଡ଼୍ ହୋଇଗଲେ

ପଙ୍କ-ପାଣି-କାନ୍ଦୁଅ ବାସ୍ନାରେ

ଢେର ଉଶ୍ବାସ ଲଗନ୍ତା

ଖୁବ୍ ଭଲଲଗନ୍ତା ସତେ

ଥରେ ଯଦି ଏ ଦିନକୁ ଦିନହିଁ କହିପାରନ୍ତି

ଥରେ ଯଦି ଏ ରାତକୁ

କହନ୍ତି ମୁଁ ରାତ !



# ॥ ମାଆ ॥

ମାଆ ସିନା ଜନ୍ମଦିଏ
କର୍ମ ଦିଏ ନାହିଁ.... ।

ଅଥଚ ସନ୍ତାନର ପ୍ରତିଟି କର୍ମରେ
ଭାଗୀଦାର୍ ହେଉଥାଏ ମାଆ
କେତେବେଳେ
ବୁକୁ ଫୁଲଉଠୁଥାଏ ଗର୍ବରେ
ଦେଖି ଦୁନିଆଁକୁ ଡାକି ଡାକି
'ମା' କହେ
ଦେଖ ଦେଖ
ଇଏ ମୋର ପୁଅ...ମୋର ଝିଅ
କେଜାଣି କେତେ ପୁଣ୍ୟ ଫଳରୁ
ଗର୍ଭଧାରିଣୀ ମୁଁ ଯା'ର ।

ଗୁଣ ବଖାଣୁ ବଖାଣୁ
ସାର୍ଥକ ମାତୃତ୍ୱର ଆତ୍ମରେ
ସ୍ୱର୍ଣ୍ଣମୟୀ ହୋଇଯାଉଥାଏ ମାଆ ।

ଆଜକୁ ଅନେକ ବର୍ଷ ତଳେ
ଏମିତି ମା'ଟିଏ ଥିଲା ଏଇ ବିଶ୍ୱରେ
ଲୋପାମୁଦ୍ରା ଗର୍ଗୀ

ରାମ-କୃଷ୍ଣ, ଗାନ୍ଧି, ଜବାହାର
ରବୀନ୍ଦ୍ର, ସୁଭାଷ ଓ ଗୋପବନ୍ଧୁର
ମା’ ବୋଲି
ଗୋଡ଼ତଳେ ପଡ଼ୁନଥିଲା ତା’ର ।

× × ×

ପୁଣି ଏମିତି ଦିନ ବି ଆସେ
ଦେଶର ମା ଲାଜେ ନ କାନ୍ଦିବା ପର
ଅକ୍ଷିମଳି କବାଟ କୋଣରେ
କାନ୍ଦୁଥାଏ ମା.... ।

ଝିଅର ଇଜ୍ଜତ୍
ନିଲାମ ହେଉଥାଏ ଦାଣ୍ଡରେ
ତୁଚ୍ଛ ସ୍ୱାର୍ଥର ପଣଆଗ ଦେଖାଇ
ଖାଇ ପିଠିରେ ଖାଇ ଭୂଷି ଦଉଥାଏ ଚୁଷି ।

ପରକୁ ଦୋଷ ଦେବାର ନଥାଏ
ଘର ପୁଅ ହିଁ
ଜୋଡ଼ା ଦଉଥାଏ ଭିଟାମାଟି ।
ବଳର ହୁଡ଼
ଅଗଣାର ପାଚସ୍ଥ ତଳେ
ଗୃପିହୋଇ ଫସିଲ୍ ହୋଇଯାଏ
ମା’ଆର ସୁନା ସ୍ୱପ୍ନ.... ।
ମ ଆର ସତଧା ବନ୍ଦର୍ଣ୍ଣି
ଲୁହଅଃଡ଼େ, ହାଡଠାଣ ଦୁସୁଥାନ୍ତି
ଏକଲା ଅପଦସ୍ଥ ଭଗାଣ ।

ଆଜି,
ମା'ର ଦୁଃଖ ବୁଝିବ
ଏମିତିକା ପୁଅ କାହିଁ ?
ଆଜି, ସତରେ କ'ଣ
କୋଡ଼-ପୁଅକୁ ଦୁଶୁନାହିଁ
ଯେ ଗୃହ ନାହିଁ, ଧନ ନାହିଁ
ଅତନ୍ଦ୍ର ଆକୁଳତାରେ
ଘୂରିବୁଲୁଛି ମା'ର ଦୁଇଟି
ଡବ ଡ଼ବ ଆଖି
କାଶ୍ମୀରଠୁଁ କନ୍ୟାକୁମାରୀ
କାଶ୍ମୀରଠୁ କନ୍ୟାକୁମାରୀ.... ?

**

# ॥ ମୋ ଝିଅକୁ ॥

ଝିଅ ମୋର....
ମାଆ ମୋର
ଅଲିଅଳୀ ମୋର
ଆ, ମୁଁ ସଜେଇଦିଏ ତୋତେ
ଏଥରକ ଶେଷଥର ପାଇଁ.... ।

କଟିରୁ ଫିଟେଇଦିଏ ଲୁଗା.... ।
ଗଳାରେ ପିନ୍ଧେଇ ଦିଏ
ଟହ ଟହ ରକ୍ତମନ୍ଦାରର
ସଦ୍ୟଫୁଟା ମାଳ .... ।
ତୋ ଲଙ୍ଗଳା ଦେହସାରା
କାସ୍ଥିନାର କଳା ଛିଡ଼ା
କିଛି ବୋଲି କିଛି ଅନ୍ୟ
ଆଭୂଷଣ ପାଇଁ.... ।

ବେଢ଼ି ପଡ଼ିଥିବା ବେଳେ
ହାତରେ ପାଦରେ....,
ମୋ ପାଇଁ
ମୁକ୍ତିର ପତାକା ଧରି

ତୁ ଯେବେ ଲୋଟିପଡୁଥିଲୁ
ରାସ୍ତାର ଧୂଳିରେ.... ।
ତୋ ଗୁଢର ଜୀର୍ଣ୍ଣବାସ
ଅନୁରାଗିବର୍ଣ୍ଣ
ହୋଇଯାଉଥିଲା
ନିର୍ମମ ବିଦେଶୀ ଗୁଳିରେ.... ।

ସେତେବେଳେ....
ଭବିଷ୍ୟତ ପାଇଁ ତୋର
କେତେ ସ୍ୱପ୍ନ ଦେଖିଥିଲି
ଅସହାୟ ଅଶ୍ରୁଳ ଆଖିରେ ।

ଭାବିଥିଲି....
ଏମିତି ଦିନ ଆସିବ,
ମୋ ପଣତ ପରିପୂର୍ଣ୍ଣ ଥିବ,
ତୋ ପାଦରୁ ରକ୍ତ ପୋଛିଦେଇ
ପିନ୍ଧାଇବି ଅଳତାର ବେଢ଼,
କପାଳେ କୁଙ୍କୁମ ଦେବି
ଅଙ୍ଗେ ଅଙ୍ଗେ
ପାଟ ପୀତାମ୍ବର....
କଟିତଟେ ଝୁଣୁଝୁଣୁ
ସୁବର୍ଣ୍ଣ ମେଖଳା,
ଏ ଘରୁ ସେ ଘରେ ଯିବାପାଇଁ
ଚଳେ ପଦ୍ମବନ୍ଧ ପାଦ
ହଜା ହୋଇ ରହିଥିବ
ଫୁଲର ସୁବାସ.... ।

ସତ କହୁଛୁ ଲୋ ଝିଅ
ବାଟମାର ଦୁର୍ବହ ଘର
ତୋର ଛିନ୍ନ ବିଚ୍ଛିନ୍ନ ଦେହର
ସହିବାକୁ ପଡ଼ୁଥିଲା ମତେ
ତଥାପି
ତୋର ଗାଣମାଧୁର୍ଯ୍ୟ କଣ୍ଠସ୍ୱର
ତୋ ଚକ୍ଷୁର ଦୃପ୍ତ ତେଜ,
ମେ ଗୁଡରେ ଦମ୍ଭ
ଏବଂ ନୟନରେ ସୁନାସ୍ୱପ୍ନ
ଦେଉଥିଲା ଭରି.... ।

× × ×

ଆଜି କିନ୍ତୁ ଏତେଦିନ ପରେ
ମୁଁ ଦେଖୁଛି
ମୋ ସ୍ୱପ୍ନର ମୁଠା ମୁଠା ଭସ୍ମ
ଗ୍ଲାନି ଏବଂ କଳଙ୍କର
ଚରମ ପଙ୍କ ରୂପରେ
ଝଡ଼ିବୁଲେ....
ହୃତ ଧୂବପଲ୍ଲୀ
ଆଜି ସହରର ପ୍ରତିଟି ବସ୍ତିରେ.... ।
ସୁନାମାଣି ଲୋ....,
କେତେବେଳେ
ଜଳନ୍ତା ନିଆଁର ଜିଭ
ଚହଟି ଉଠିଯାଏ ତୋଟେ
ତୋ କରୁଣ ହାହାକାର
ଏକା ମୋ ଛଡ଼ା
ଆଉ କାହା କାନେ ପଶେନାହିଁ ।

କେତେବେଳେ....
ରାସ୍ତାରେ ହାଣି ଓଟାର
କଣ୍ଢାମାଉଁସକୁ ତୋ'ର
ଛିନ୍ନଭିନ୍ନ କରୁଥାନ୍ତି
ଶାଗୁଣା ବନ୍ୟଆ ପଲ
ଗ୍ରୃଢଫଟା ସେଇ ଦୃଶ୍ୟ
ମୋ ଛଡ଼ା
କାହା'ର ଆଖିକି ଦରଶନାହିଁ ।

କେତେବେଳେ....
ଲଙ୍ଗଳା ମୁକ୍ଳା ହୋଇ
ବାଘୁଣୀ ପରିକା
ଖିଲ ଖିଲ ହସ ହସି
ନାଚୁଥା'ନ୍ତି
ସହସ୍ର ଲୋକଲ ଆଖିତଳେ,
ଜାଣେ ନେ
ଏକା ମୁଁ ଜାଣେ
ସେ ସବୁ କେବଳ
ଖାଲି ପେଟ ଗୃଣ୍ଣକପାଇଁ.... ।

ସେଇଥିପାଇଁ ତ
ଏତେଦିନ
ଏତେ ସବୁ ଦେଖି ଶୁଣି
ସହି ସହି
ଆଜି ଆଉ ଓକ୍ରୋଧ ରଖୁନି
ନିଜ ହାତେ, ମଇଁ ଦାଣ୍ଡଟାରେ

ଆଜି ତୋ ଦେହରୁ
ସବୁ ବସନ ଭୂଷଣ
ଦେଉଛୁ ଫିଙ୍ଗାଇ
କନକାଞ୍ଜଳି ତୋ ହାତେ
ଦେବ ବୋଲି
ଥରେ ଭାବିଥିଲି,
ଆଜି ତୋ ହାତେ ଦେବାକୁ
ମୋ ପାଖରେ ଏକମାତ୍ର
ଅଛି ଏକ ଯୋଗ୍ୟ ଉପହାର
ରକ୍ତମୁଖା ସୁତୀକ୍ଷ୍ଣ କଟାର ।

ଢାଙ୍କିପାରୁ ଯଦି
ସୁନ୍ଦର ନଗ୍ନତା ତୋର
ନରମୁଣ୍ଡମାନେ.... ।
ନଗ୍ନ ଜାନୁ-ଯଙ୍ଘନ
ଆଚ୍ଛାଦିତ କରିପାରୁ ଯଦି
ଅଂଗଣ୍ୟ ଅମଣିଷଙ୍କ
ଛିନ୍ନହସ୍ତ ଜାଲେ.... ।
ବଳିପଡ଼ିବା ଆଗରୁ
ବଳିପକାଇ ପାରୁ ତୁ ଯଦି
କୋଟି କୋଟି ମଦଗ୍ଧ ପଶୁଙ୍କୁ
ତୋର ନଗ୍ନ ପାଦତଳେ.... ।

ହୁଏତ ଭୟରେ ତେବେ
କାହାରି କଣ୍ଠରୁ ଥରେ
"ମା' ଆ'" ଡାକ ଆଉ ଶୁଭିବ ବାହାରି.... ।

ଏବଂ ତା' ପରେ
ସହସ୍ର କଣ୍ଠରେ ତା'ର
ଆର୍ତ୍ତ ପ୍ରତିଧ୍ୱନୀ ଶୁଣାଯିବ
କ୍ରମଶଃ ତା ଶୁଣାଯିବ
ଶିଶୁର ଦନ୍ତୋଷ୍ଠି ସ୍ୱର ପରି ।

ମାଆ ମୋର,
ସୃଷ୍ଟିର ମଧୁରତମ ଶବ୍ଦ
ସତେ ଶୁଣିପାରିବି ମୁଁ ଦିନେ....,
ବିଶୁଦ୍ଧ ସ୍ୱରରେ !

ସେଥିପାଇଁ ଆଉକନ୍ତୁ
ଉପାୟ ଦର୍ଶେନା ...
ଖାଲି ତତେ ନେହୁରା ହେଉଛି
ଦୟା, କ୍ଷମା, ସ୍ନେହ, ଲଜ୍ଜା
ସବୁ ଗ୍ରୁଡ଼ି ।
ତୋର ଏଇ ରକ୍ତମୁଖା
ଖଡ୍ଗଟିକୁ ଟିକେ
ଧଇଥା ଟାଣମୁଠା କରି....

—*—

## ॥ ମାନସ ସନ୍ତାନ ॥

ଆଉ କଣ, ଆଉ....
ତମର ସେ ସୁକୁମାର
ଭାବନାର ଶିଶୁଟିକୁ
ଠିକେ ସନ୍ତର୍ପଣେ, ଆକଟରେ ରଖ ।

ଦେଖନ କି ?
ଦୂରଆଡ଼େ କୋଣ୍ଟିଆ ମାଡୁଛି
ଶକୁନ ଓ ଏରକାର ବଣ
ଦୁର୍ମିଳ ରସୁତ ପୁଣି ବଣ୍ଡବା ନନ୍ଦନ
ସମସ୍ତେ ଏକାଠି ଆଜି
ନୂଆ ରୂପ ଧରି ମେଣ୍ଟ ବାନ୍ଧୁଛନ୍ତି ।
ଆକାଶଟା ଅନ୍ଧକାର ପବନରେ
ରୁନ୍ଧି ହୋଇଯାଏ....
ଚିମ୍‌ନିର ଧୂଆଁଠାରୁ କଳା.... ।

× × ×

ଆଚ୍ଛା, ତମ ଝିଅଟିର
କଅଁଳ ନରମ ହାତେ
ଦେଇଥାନ୍ତ ଟର୍ପରଟିଏ ଭଲ
ଧରନ୍ତା ସେ କଟ୍‌ଲ ଚଣ୍ଡୀ

ସଂହାରଣୀ ରୂପ....
ବିବସନା ହୁଅନ୍ତା ସେ
ନ ହୁଅନ୍ତା କେବେ କନ୍ଥ ପଶୁର ଧର୍ଷିତା ।

×　　　×　　　×

ମେ ଯୁଅଛି ଭଲ
ଏମିତ ହୁଅନ୍ତା,
ଗୁଲିଗଲେ ଯମୁନାର ଜଳ
ବାଟଗୁଡ଼ ଦେଉଥାନ୍ତା ଦୁଇଭାଗ ହୋଇ
ଫାଟିଯାନ୍ତା ହସ୍ତ ପଦୁଁ ବେଡ଼
ସଦର୍ପରେ ଉତ୍ତୋଳତ କରନ୍ତା ବାସୁକୀ
ତା ସହସ୍ର ଫଣା....

ଏତେ ଅସହାୟ କାହିଁ
କର'ତୁମ ମାନସ ସନ୍ତାନେ ?
କେହ୍ନ ଅଜ୍ଞ ସଶଙ୍କିତେ
କାନ ଡେରୁନାହିଁ
ଶୁଣିବାକୁ ତା କଠୋର
ପ୍ରଥମ କାନ୍ଦଣା !!

×　　　×　　　×

ହେ ଅମୃନଷ୍ଟ, ମୋହଗ୍ରସ୍ତ ସ୍ରଷ୍ଟା,
ଏପରି ସନ୍ତାନଟିକୁ
ଦାଣ୍ଡକୁ ଖେଳିବାପାଇଁ ଗୁଡ଼ନାହିଁ ମୋଟେ
ଅଳ ଘୃରିଅଛେ
ବନ୍ଧୁକର ବାୟୋନେଟ୍ ପଣ
ନିର୍ମମ ଚକ୍ ଚକ୍ ଖର ।

ପ୍ରତି ନିଃଶ୍ୱାସେ ଶୁଭେ
ହାଉଁ ସାଉଁ ଗୁଳିର ଫୁତ୍କାର
ତମ ଗେହ୍ଲାପୁଅଙ୍କର ଲହୁଣୀଆ
ଫର ଫର ଦେହ
ନମିଙ୍କେ ଡେମ୍ପଚୁଡ଼ା କୃଷ୍ଣଚୂଡ଼ା
ଫୁଲପରି ଝୋଇଥିବ ପରା !!

—*—

## ॥ କାରଣ ॥

ପବନରେ ଏ କାନ୍ଦା ନିଃଶ୍ୱାସ ?
ଚୁମ୍ବି ଦେଇଯାଏ....
ଚପି ଚପି ନିଃଶବ୍ଦରେ
ପଞ୍ଜରାକୁ ଦୋହଲାଇ ଭାଙ୍ଗି ଦେଇଯାଏ
ସହନର ସୀମାରେଖା ଲଂଘିବାକୁ
ପାଦଟେକି ଦେଇ
ଅସହନୀୟ ବ୍ୟଥାକୁ ଚିହ୍ନି ନେଇଯାଏ
ଚେତନାର ସ୍ତର ସ୍ତର ଭେଦ !!

ବାସୁଦେବ ଘରଣୀ କି
ସନ୍ତୁଳି ହେଉଛନ୍ତି ପୁଣି ଗର୍ଭ-ବେଦନାରେ ?
ପାଟିରେ ଗୁଞ୍ଜୁଛି ହାତ
ଲୁହ ଏବଂ ରକ୍ତ ଟୋପା ଟୋପା
ଯେହେତୁ ବନ୍ଦୀ କଂସ
ଅଷ୍ଟମ ସନ୍ତାନ ପାଇଁ ଅଧୀରେ
ସଂତ୍ରସ୍ତ କ୍ରୋଧରେ.... ।

ଅବରୁଦ୍ଧ ଯାତନାର
ଶେଷପୃଷ୍ଠା ସ୍ୱାକ୍ଷରିତ ହୁଏ
ଉତ୍ସବ ପାଳିତ ହେବ
ନଳେଲଳ୍ ଉଲୁଧ୍ୱନିଆ
ସୂର୍ଯ୍ୟ ଉଦୟରେ.... ।

କୁମାଙ୍ଗ କେଉଁଟ୍ଣୀର....
ମତ୍ସ୍ୟଗନ୍ଧ ନଳିନ ରଜରେ....
ଅବା ଉର୍ଦ୍ଧ୍ୱରେଖା ଯେଉଁ
ଯୋଗୀଟିର ସ୍ଖଳିତ ବୀର୍ଯ୍ୟରେ.... ?
କେଉଁଥିରେ ଲୁଚିଥିଲା
ପ୍ରକୃତି ମଣିଷ ପାଇଁ ଏତେ ସମ୍ବେଦନ !
ଏତେ ଆତୁରତା ?

ମାତ୍ୱା, ସମସ୍ତର ଗର୍ଭ ଶସ୍ତେ
ଥାପିଦେଇ 'କୃଷ୍ଣ'
ପୁଣି ଅଙ୍କୁରିତ, ପଲ୍ଲବିତ
ମହାଦ୍ରୁମେ ଫୁଟାଇଲେ 'ଗୀତା' ।

କେମିତି ଶୁଣିଲ ତୁମେ
ଲକ୍ଷକୋଟି ଜୀବନର
ଅସହାୟ ଆକୁଳ କ୍ରନ୍ଦନ
ଆରମ୍ଭ ତ ମେଣ୍ଟାଇଲେ
ପରିତ୍ୟକ୍ତ ନଡ଼ା ବିଛଣାରୁ
ଯେଷ ପୁଣି କ୍ରୁଶ କାଠେ ।
'ବାଇବେଲ୍'ର ଗୋଟି ଗୋଟି ଲିପି
କହିଉଠିଲେ ତା ଲଭି
କଣ୍ଟାବିଦ୍ଧ ହୃଦୟକୁ ଶୋଣିତ ସିଞ୍ଚନ ।

× × ×

ମୁଁ ବି ନୁ କବିଟିଏ
ଭିନ୍ନ ଧରଣରେ....
ମୁଁ ବୁଝେ ମଣିଷ ଅଭିଧି
ତା ସାର୍ଥରେ ଅନ ସ୍ମାର୍ଟ ହୋଇ ।
ମୁଁ ଦେଖେ ମଣିଷକୁ
ସଙ୍ଗହୀନ, ଅନ୍ଧକାଶ
ସ୍ୱାଦୃଷ୍ଟି ଡାଳି.... ।

ବେଦନାର ଶୃଙ୍ଗ ଉଚ୍ଚେ
ପାତଦେଇ, ମୋ ଶିଳ୍ପ
କୋଟିଜମ ସୌଖୀନ୍ ଅଧମ.... ।
କୁଷ୍ଠିଙ୍କୁ ଦେବତା କରିଦେଇ
ଗୀତା, ବାଇବେଲ ଏବଂ କୋରାନ୍‌କୁ
ଧର୍ମଗ୍ରନ୍ଥ କରି
ମୁଁ କରିଛି ବିପ୍ଳବର ବନ୍ଧ୍ୟାତ୍ୱକରଣ ।

ମୋ ଶିରରେ,
ସ୍ୱାୟମ୍ଭୁବ 'ମନୁ'ଙ୍କର ବିଶୋଧିତ ରକ୍ତ
ମୁଁ ତ ଦସ୍ୟୁ ରତ୍ନାକର ନୁହେଁ,
ଅବା ତ୍ରୁମପରେ ଅସ୍ଥିରତମ ମନର
ଉପାଖ୍ୟାନ ନୁହେଁ....,
ମୁଁ ନୁହେଁ
କେବଳ ଆଦିବଗପୁଷ୍ଟ
କଳୁଷିତ (?) କାରକ ସନ୍ତାନ ।

**

# ॥ ମୋ ନାଁ ॥

"ଚୁପ୍ କର
ଅଲେ ଗାର୍ଗି !
ଚୁପ୍ କର ଚୁପ୍ କର....
ବେଶୀ ତର୍କ କଲେ
କାନ୍ଧରୁ ଛିଣ୍ଡେଇଦେବି ମୁଣ୍ଡ...."

ସେଦିନ
ଏ ଅସଭ୍ୟ ଗର୍ଜନ ଶୁଣି
ମୁଁ ଚମକି ପଡ଼ିଥିଲି,
ସ୍ତବ୍ଧ ହୋଇ ଆପଣାକୁ
ବେଦ ଏବଂ ଉପନିଷଦକୁ
ପ୍ରଶ୍ନ କରିଥିଲି,
ଇଏ କ'ଣ ସେଇ ଯାଜ୍ଞବଲ୍କ୍ୟ ?
ନିମିଷେ ଆଗରୁ
ବ୍ରହ୍ମଜ୍ଞାନ ଚର୍ଚ୍ଚା କରୁଥିବା
ଇଏ କ'ଣ ସେଇ ଦିବ୍ୟ ଦ୍ରଷ୍ଟା ?

+ + +

ନର୍କର କୀଟଠାରୁ
ତୁଚ୍ଛ ମାଇପି ଲୋକଟା
ତା'ଠୁଁ ପୁଣି ଏତେ ଜ୍ଞାନ ?

ଜ୍ୟୋତିଷ ଶାସ୍ତ୍ର ଏତେ ଅଦ୍ଭୁତ କୋଣ !
ଏ ତ ଘନଘୋର ପାପ
ନାଶ ଯଦ ଜ୍ଞାନୀ ହୁଏ
ସୃଷ୍ଟି ହୁଏ ଧ୍ୱଂସ... ।

ସବୁ ପୁରୁଷ ପଣ୍ଡିତ
ବଡ଼ ବ୍ୟତିବ୍ୟସ୍ତ ହୋଇ
ସୃଷ୍ଟିର ହିତ (?) ପାଇଁ
ସମ୍ମିଳିତ କଲେ ଆଲୋଚନା.... ।

ପରମ ମଙ୍ଗଳପ୍ରଦ (?)
ନିଷ୍ପତ୍ତି ଅନୁଯାୟୀ ତାଙ୍କର
ସେମାନେ ମୋ ଜିଭ କାଟିଦେଲେ
ସେଇ ପରଠୁ ମୋର
ଆଜିଯାଏଁ ସଂସାର ଜାଣିଚି
ଜଣେ ଥିଲେ ନାମୀ ଜ୍ୟୋତିର୍ବିଦ୍
ନାମ ତାଙ୍କ ଖନା.... ।

× × ×

ଆଜି ପୁଣି
ଏକ ଗୁର ସ୍ତ୍ରୀ ଲେଖକର
କେଇପଦ କଥା ଶୁଣି
ନଡ଼ବଡ଼
ଧସ୍କି ପଡ଼ୁଚି
ମେରୁଦଣ୍ଡହୀନ ଏକ
ଅନ୍ଧ ଏବଂ ଅସଭ୍ୟ ଧରମ ।

ତାକୁ ଦୋହଲିବା ଓ
ଲୁଷ୍ଟ୍ରି ପଡ଼ିବା ଦେଖି
ତା ଉପରେ ଚଢ଼ି
ବସିଛ ବୋଲୁଥିବା
ଶତଶ ନିର୍ମଳ ଲଠାର ଦଳ
ମୋ ମୁଣ୍ଡଟା ଛିଣ୍ଡେଇଦେବାକୁ
ଗୃନ୍ଧା ମାଗି ମ ଗି
ଟଙ୍କା କିଛି କରଛନ୍ତି ଜମା.... ।

ସେମାନେ ଜାଣିନାହାଁନ୍ତି
ଏଇ ଅଳ୍ପଦିନ ଭିତରେ
ମୁଁ ତାଙ୍କ ଇତିହାସଠାରୁଁ
ଶହେଗୁଣ ଦୀର୍ଘ ଇତିହାସ
ଲେଖିସାରିଲିଣି....

ମୁଣ୍ଡ କମ୍ପା ଜିଭ
ଏବେ ଯାହାକିଛି ଛିଡ଼ୁ
ପରବାୟ ନାହିଁ.... ।

ନାସ୍ତିଏ....
ବଂଚବାର ସଂଜ୍ଞା ଖୋଜିଲି ବେଳେହିଁ,
ତା'ର ଅପେ ମନେପଡ଼ିଯିବ
ମୋ ନାଁ ।
ତସ୍‌ଲିମା....ତସ୍‌ଲିମା.... ।

—*—

## ॥ ସାଧନା ॥

ସମସ୍ତେ ଅସି ପାରନ୍ତି ନାହିଁ
ନିକଟକୁ ଆବେଗ ଅଧୀରେ.... ।

ସମସ୍ତେ ଛୁଇଁ ପାରନ୍ତିନାହିଁ
ହୃଦୟକୁ ନିବିଡ଼ ଭାବରେ.... ।

କୋମଳ ସମ୍ପର୍କଟିଏ ଜନ୍ମନେବ
ଏଠି, ଅଧିକାଂଶ ସମୟରେ
ବସ୍ତ୍ରାକଡ଼ର ଦୁର୍ଘଟଣା ହିଁ କେବଳ,
ତାକୁ ସ୍ନେହର ପଲ୍ଲବ ତଳେ
ଯେ ତାଙ୍କ ରଖିବା
ଯତ୍ନରେ ବଢ଼ାଇବା
ଟାଣକରି ଠିଆ କରେଇବା
ମୋ ସାମନାରେ ଉପସ୍ଥିତ
ଭ୍ରାନ୍ତ ସମସ୍ତଙ୍କର
ଯୋଗ୍ୟତା ବାହାରେ.... ।

ହୃଦୟର ସମ୍ବନ୍ଧ ତ
ଟଙ୍କା ରୋଜଗାର ନୁହେଁ ଯେ
ପଦୋନ୍ନତ ସାଥେ
ତାଳଦେଇ ବଢ଼ି ଚାଲିଥିବ.... ।

ଜନ୍ମ କେଉଁ ସାମାଜିକ ଠିକାଦାରୀ ନୁହେଁ
ଯେ ସବୁଠାରୁ କମ୍ ବିନିଯୋଗ କରି
ସବୁଠାରୁ ବେଶୀ ଲାଭ ପାଇବାକୁ
ଦୃଷ୍ଟି ରଖିଥିବ.... ।

ଶୁଣ,
ଟିକେ ଝୁପିବାସୀ ଆଳାପ କରିବା
କର୍ତ୍ତବ୍ୟ କରିବା
ଦୟା ଦେଖାଇବା
ଏବଂ
ଆତ୍ମାର ଆହ୍ଲାଦ ପାଖେ ସମର୍ପିତ ହେବା
ଏ ସବୁଗୁଡ଼ିକ କେବେ
ଏକାକଥା ନୁହେଁ ।

ଗୋଟି ଗୋଟି ସ୍ପନ୍ଦନକୁ
ଜପାମାଳି କରି
ମନ୍ତ୍ରପରି ପ୍ରିୟନାମ ନୀରବରେ ଉଚ୍ଚାରି ଉଚ୍ଚାରି
ଅନୁରାଗ ଓ ଅନାସକ୍ତିର
ଯୁକ୍ତ ବନ୍ଧନରେ
ଗୋଟିଏ ପାଦରେ
ଅଦ୍ଭୁତ ସନ୍ତୁଳନରେ
ଠିଆହୋଇ ରହିଥିବ ସାଧକଟି ପରି
ସୃଷ୍ଟି କାଚରେ ତିଆରି
ଅକ୍ଷତ ଦେବୀମୂର୍ତ୍ତିଟିଏ
ଆଙ୍ଗୁଳାରେ ଧରି
ସର୍ବସ୍ୱ ଉଜାଡ଼ିଦେଲା ପରେ
କେବଳ ବିସର୍ଜନର
ଲଗ୍ନ ଅପେକ୍ଷାରେ ।

ହତ ନୂତ୍ନ....
କେବେ ଭେଟିଛକି
ଏକ୍ଷୁପଣ ଯୋ'ଗୀଟିଏ
ଭୋଗୀଟିଏ
ଗୋଟିଏ ଦେହରେ
ତୁମ ସମ୍ମୁଖରେ ଥିବା
ଦର୍ପଣ ଭିତରେ ?!?

—*—

## ॥ ମନ୍ଦିର ଓ ବେଶ୍ୟାଳୟ

ମୂଳରୁ ସେଇଥିପାଇଁ
ନାହିଁ ନାହିଁ କରୁଥିଲି....

କାରଣ ମୁଁ ଜାଣିଥିଲି
ଥରେ ହଁ କରିଦେଲି ପରେ
ତେଣିକି ....
ମତେ ହିଁ ସମ୍ଭାଳିବାକୁ ହେବ
ସମସ୍ତ ତିକ୍ତ-ମଧୁର ଦାୟିତ୍ୱ
ଆମ ସମ୍ପର୍କର ।

ଲୋକଙ୍କର ଆଖିଠାରକୁ
ପିନ୍ଧିବାକୁ ହେବ
କପାଳର ଟିପାପଣ.... ।

କଳଙ୍କର ବନମ୍ର ଫୁଲଟିକୁ
ଯତ୍ନରେ ଖୋସିଦେବାକୁ ହେବ
ଜୁଡ଼ାରେ.... ।

ଛୋଟେ ଦେଖିଲେ
ଅକାରଣରେ ଛନ୍ଦହୋଇ ପଡ଼ୁଥିବା ପାଦ
ଓ ଝାଳେଇ ଯାଉଥିବା
ଦେହମୂଳର ଦୋହଟକୁ ବୋଦ୍ଧ
ମତେ ଗୃଳିବାକୁ ପଡ଼ିବ
ଶେଷ ସୀମାଯାଏ ।

ନିଦ୍ରାଣ ଗୁରୁତ୍ୱହୀନ
ଧୂଳିଧରଛି ପଣ
ତୁ ହୁଏତ ଗଢ଼ିଥିବୁ, ଭାଙ୍ଗିଥିବୁ
ତୋର ନିଷ୍ପାପ ଚପଳତାରେ
କେତେଥର ଏଇପରି
କଅଁଳ ସମ୍ବନ୍ଧ... ।

କଥା ଦେଇ
ପହଁଚିନଥିବୁ ସମୟରେ....
ଭାତ ଶୁଖି ଚଣା ହୋଇଥିବ.... ।
ଆଖିରୁ ଝଡ଼ାଲ ହେଲ ମାତେ
ଭୁଲିଯାଉଥିବୁ ସବୁ ... ।

ବନ୍ଧୁମେଳରେ
ନୂଆ ରେମାନ୍ସର ସୁଖ
ବଖାଣୁ ବଖାଣୁ
ଅପତର୍କ ଶବ୍ଦ ଆଘାତରେ
କେତେଥର ନଗ୍ନ କରିଦେଇଥିବୁ ମତେ !!

ହେଉ, ସେଦିନ ଯେମିତ
ହାଲ୍‌କାହବେ
କହୁ କହୁ କହୁପକେଇଲୁ
—ମନ୍ଦିରକୁ କେତେ ଭକ୍ତ ଆସନ୍ତି ଯାଆନ୍ତି
ଏକା ମୁଁ କ'ଣ ଦେବୀଙ୍କର
କୃପାଦୃଷ୍ଟି ପାଏ !!

ତୋ ହସ୍ତ
ହୃଦୟର ଝିଅ ଯେ ଡ଼ିଦେଲା ପରେ
ଏ ସବୁ ବି ସହିବାକୁ ହେବ
ମୁଁ ଜାଣିଥାଏ
ଖୁବ୍ ଭଲକରି ସବୁ ଜାଣିଥାଏ.... ।

ରଙ୍ଗୀନ୍ ପେଣ୍ଟ୍‌ହିଏ ପରି
ପ୍ରୀତିକୁ....
କେତେବେଳେ ଗ୍ରୁହରେ ଜାକି
କେତେବେଳେ ପାଦରେ ଗଡେଇ
ଖେଳୁଥିବା, ରେ ନବୋଧ ବାଳକ,
ତୁ କାହିଁ ବୁଝିବୁ
ତେତିଶ କୋଟି ଦେବାଦେବୀଙ୍କ
ମୁଁ ଏକାକୀ ପୂଜାରଣୀ
ବ୍ରତିନିଷ୍ଠ ସମର୍ପଣ ଦେଇ
ସମସ୍ତଙ୍କୁ ଜୀବନ୍ୟାସ ଦେଉ ଦେଉ
ମୁଁ କପର ଅନ୍ଧୋଗଣ
ଉପବାସ, ଉଜାଗର ରହେ.... ।

ସବୁବେଳେ ଆଶଙ୍କାରେ
ଗ୍ଳୁଢ ଜର ଜର
ଯେ ଲବେ ମାନ୍ଦ ଯଦ୍ଧ ମୋର
ଆଖି ପଡ଼ିଯିବ
ତତ୍କ୍ଷଣାତ୍ ସ୍ୱାର୍ଥର ତୀକ୍ଷ୍ଣ କଟାର
ଆବେଗର ପ୍ରାଣ ନେଇଯିବ.... ।

ବଶୁଦ୍ଧତମ ପ୍ରେମକୁ
ଥରଟିଏ ଛୁଇଁବାର
ମାନସିକ ଅପୂର୍ଣ୍ଣ ରହିବ.... ।

କାହିଁକି ଜାଣିଛୁ ?
ଏଠି, ତୋପରି ବହୁ ଦ୍ୱନ୍ଦ୍ୱଗ୍ରସ୍ତ ଜୀବଙ୍କ
ସାମୟିକ ବିଳାସ ଓ ତଥାକଥିତ ପ୍ରୀତିର
ମିଶାମିଶି, ଏକ ଆଚ୍ଛନ୍ନ ଉପଲବ୍ଧିର ଭୂମିରେ
ମନ୍ଦିର ଓ ବେଶ୍ୟାଳୟ
ଏ ଦୁଇ ଦ୍ୱାରର ବ୍ୟବଧାନ
ଜମା ବେଶି ନୁହେଁ ।



## ॥ ସ୍ପର୍ଶ ॥

ଯେଉଁଠି....
ସ୍ୱପ୍ନ ଅବୁ ଦେଖାଯାନ୍ତି
ଚଳିଅନ୍ତେ, ଗ୍ଳଗଣିଶ୍ଚ ମସ୍ତକର
ମେଳଥିବା ଦୁଇଟି ସେ ସ୍ଥିରଚକ୍ଷୁପଣ··· ।

ଦେହଟାକୁ ମନେହୁଏ
ଅବଶିଷ୍ଟ ମାଂସର ବିପଣୀ,

ଶଙ୍ଖ-ହୁଳହୁଳି ଧ୍ୱନି
ଦୁର୍ବାକ୍ଷତ ସତ୍ତ୍ୱେ
ସମର୍ପଣେ ମିଳେ ସେଠି
କେଉଁ ଏକ ଆଘାତର ସ୍ପର୍ଶ
ଜୀବନଟା ହୋଇଯାଏ
ଅଲଘଂନୀୟ ଏକ ଉଗ୍ର ଅପରାଧ.... ।

ସେଠି ପୁଣି

ଏମିତି ବି ସ୍ପର୍ଶ ଅଛି ?
ଦାଅଙ୍କ ମଥାରୁ ସତେ
ଗୋପନରେ ଆସ୍ତେକରି
ଝରିପଡ଼େ ତୁଳସୀ ସ୍ତବକ
ଅର୍ଘ୍ୟ ପାଲଟିଯାଏ
ନିମାନ୍ତ୍ରିତ ଆତ୍ମ-ନିବେଦନ
ପ୍ରତି ନିମିଷରେ, ପ୍ରତି ସ୍ନାୟୁରେ ସ୍ନାୟୁରେ
ଝରି ସଞ୍ଚରି ଯାଏ
ବନ୍ଦନାର ଶ୍ରେଷ୍ଠ ମୂଲ୍ୟବୋଧ ।

— ୦ —

## ॥ ଯାତ୍ରୀ ॥

ହୁଏତ, ଆହୁରି ଥରେ....
ଯିବାପାଇଁ ହେବ ତୋତେ
ଅତିକ୍ରମ କରି, ଏହି
ସମ୍ପର୍କର ଏରୁଣ୍ଡି ବନ୍ଧକୁ ।

ଭୁଲେଇଦେବାକୁ ହେବ
ଝୁଣ୍ଟି ପଡ଼ୁଥିବା ତୋର
ବିକ୍ଷତ ପାଦ ଦୁଇଟିକୁ....,
ଅବା ଭାଙ୍ଗି ପଡ଼ୁଥିବା ମନର ନୌକାକୁ ।

ଯେ-ସାମନାରେ ଲମ୍ବିଥାଉ
ଡହ ଡହ ସାହାରାର ବାଲି,
କିମ୍ବା ଝଞ୍ଜା ବିକ୍ଷୋଭିତ
ସାଗରର ଉତ୍‌ଫେଣ ଭଉଁରୀ....
ତତେ ଚାଲିବାକୁ ହେବ ଆଗକୁ ଆଗକୁ....
ମେଲିଦେବା ପାଇଁ ହେବ
ଶତଛିନ୍ନ ଜୀବନର ପାଲ.... ।

ଫେର ତୁ ବୁଝିବୁ ନାହିଁ
ଆଉଥରେ ଦେଖିବାକୁ
ଛାଡ଼ିଆସିଥିବା ସେଇ ମରୁଦ୍ୟାନେ
ଅଛି ଜବା ତୋ ପାଇଁ ତଥାପି ଅଞ୍ଜୁଳେ ଜଳ,
ଅବା ଜଳୁଛି ତଥାପି
କୂଳର ସେ ବଣାଘରେ
ତୋ ପାଇଁ ସାମୟିକ ସ୍ମୃତିର ମଶାଲ....

—*—

# ॥ ସବା ପଛଧାଡ଼ିର ସ୍ତ୍ରୀଲୋକ ॥

ସବା ପଛଧାଡ଼ିରେ ହିଁ
ବସିରହିଥାଏ ସ୍ତ୍ରୀ ଲୋକଟି.... ।

ମୁହଁରେ....
ଛାଇ-ଆଲୁଅର ଲୁଚକାଳି ଖେଳେଇ
କେତେବେଳେ
ଖେଦୁଅ ଖରାର ଧାନକ୍ଷେତ
କେତେବେଳେ
ଅଶିଣ ସଞ୍ଜର ଆକାଶପଣ
କେଉଁ ଅଜଣା ସମ୍ଭାବନାରେ
ନିମଗ୍ନ ହୋଇ
ସବା ପଛଧାଡ଼ିରେ ହିଁ.... ।

ସାମନାରେ....
ଧାଡ଼ି ଧାଡ଼ି ସଜାହୋଇଥିବା
କାଚର ଦର୍ପଣରେ
କେବେ ବି ପ୍ରତିବିମ୍ବ ପଡ଼େନା ତା'ର ।
କଥା କଥାକେ
ବିଭିନ୍ନ ଭଙ୍ଗୀରେ
ସଜାଡ଼ି ହୋଇଯିବାକୁ
ତା'ର ବେଳ କି ସମ୍ବଳ ନ ଥାଏ ।

ତଳକୁ ମୁହଁ ପୋତି
ମନକୁ ମନ କଥା କହୁଥାଏ
ନିଜ ସହିତ ନିଜେ
ଖେଳୁଥାଏ ସବୁବେଳେ.... ।

ତାର କୋମଳ ନିର୍ଜନତାର
ଖେଳପଡ଼ିକୁ
ଯାହା ଇଚ୍ଛା ତାକୁ
ହାତଧରି ଡାକଅଣିପାରେ
ଏକା ସେଇ.... ।
ସବା ପଛଧାଡ଼ିରେ ବସିଥିବା ସ୍ତ୍ରୀ ଲୋକଟି ।

ସଖି ସଙ୍ଗେ....
କରତାଳି ଓ ସମ୍ଭାଷଣରେ
ପାହାଡ଼ ସବୁ....
ମୂଣ୍ଡଟେକି ଦମ୍ଭରେ ଠିଆହୋଇପଡ଼ନ୍ତି ।
ଆତ୍ମୀୟତାର ମାଲତୀଲତାମାନେ
ଛନ୍ଦହୋଇପଡ଼ନ୍ତି ଦେହସାରା ।

ସବା ପଛଧାଡ଼ି
ଆଦୌ ଦୁଶେନାହିଁ ଆଖିକୁ
ଏଇ ଅଳ୍ପ ସମୟ ଆଗରୁ
ସେଠି କିଏ ଥିଲା ବୋଲି
ସନ୍ଦେହରେ ପଡ଼ିବାକୁ ହୁଏ.... ।

କେଜାଣି କେତେବେଳୁଁ
ସବୁ ନୀରବତାକୁ ଶେଷ କରି
କୁଆଡ଼େ ଉଭେଇଯାଇଥାଏ ।
ସବା ପଛଧାଡ଼ିର ସେଇ ସ୍ତ୍ରୀ ଲୋକଟି ।

—୦—

## ।। ପାହାଡ଼ ।।

ଠିକ୍ ଏଇ ଉଦାସ ପାହାଡ଼ପରି
ଆକାଶକୁ ଗୁଚ୍ଛ ପଟେଇ ଦେଇ
ସବୁ ବଜ୍ର ବିଜୁଳିର ଆଘାତ ପାଇଁ
ଅପେକ୍ଷା କରିବାକୁ ହୁଏ.... ।

ଆତ୍ମାରୁ ଅଲଗା ହୋଇନଥିବା
ପରମ ଆତ୍ମୀୟଟିକୁ
ଜୀବନରୁ ଅଲଗା କଲାବେଳେ
କେହି କୁଆଡ଼େ ନଥାନ୍ତି ତ
ଟିକେ ଆହା କରିବା ପାଇଁ ।

ଆଗରେ ମେଲିଯାଉଥାଏ
ଦୀର୍ଘ ଯାତ୍ରାପଥଟିଏ
ଆଗକୁ ପାଦ ବଢ଼େଇବା ପୂର୍ବରୁ
ବ୍ୟଥା, ଅଭିନ୍ନ ହୃଦୟ ଲୋକଟିଏ ପରି
ହାତଧରି ପାଖରେ ଠିଆହୋଇ ରହିଥାଏ.... ।

କେତେ ଇଚ୍ଛାହୁଏ ସେତେବେଳେ
ଟିକେ ପଛକୁ ଫେରି ଚାହିଁବାକୁ ।
ଅଝଟ ଅଖି
ବାରମ୍ବାର ଲୁହଝରେଇ ଲେଉଟିପଡ଼ୁଥାଏ ।
ଶାଖାରେ ଲାଗିରହିବାର ଆକୁଳତାରେ
ଥରିଉଠୁଥାଏ ହଳଦିଆ ପତର ଗୁଚ୍ଛ.... ।

ପାଦକୁ ଗୁଳ୍ ଗୁଲ୍ ବୋଲି
ଯେତେ ଅକଟିଲେ ବି
ଝୁଣ୍ଟି ପଡୁଥାଏ ଥରକୁ ଥର.... ।

ଅଗତ୍ୟା....
ଉଠିପଡ଼ି ଜୀବନ ଆଗେଇଗଲେ ସିନା
ଆଶାର ପୃଥିବୀ
ସ୍ଥିର, ନିଶ୍ଚଳ ହୋଇଯାଇଥାଏ ।
ଠିକ୍ ଏଇ ଶୂନ୍ୟକୁ ଚାହିଁରହିଥିବା
ପାହାଡ଼ ଯେମିତି... ।

ପଥର ବୋଲି
ସେ କ'ଣ ସତରେ
କିଛି କଥା କୁହେନା.... ?
କିଛି ବୁଝେନା ?

ନା ଏମିତି
କହି ହେଉ ନଥିବା
ବୁଝି ହେଉ ନଥିବା ଭାଷା ସବୁ
ପଥର ହୋଇଯାଇ
ବେଳେ ବେଳେ
ପାହାଡ଼ ତିଆରି କରନ୍ତି ??

—*—

## ॥ ରାସ୍ତା ॥

ହାତ ଧରାଧରି
ଚାଲିବା ପାଇଁ
ଆମେ ବାଛି ନେଇଥିଲେ
ଆମ ରାସ୍ତା.... ।

ଗୋଟାଏ ପଟେ
କଥାକୁହା ଝାଉଁବଣ
ନ ତ୍ୟ ବଢେର ସମୁଦ୍ର
ଆରପଟେ....
ଯେତେ ଦୂରରୁ ଚାହିଁଲେ ବି
ଦିଶୁଥିଲା
ମନ୍ଦିରର ନେତ.... ।

ଜୀବନ ଆଉ ମୃତ୍ୟୁକୁ
ଦୁଇଭାଗ କରି
ହୃଦୟର କୋମଳତାରେ
ରାସ୍ତା ଲମ୍ବିଥିଲା ଆଗକୁ
ସବୁଦିନ ସକାଳୁଁ
ଭଲପାଇବାର ସ୍ୱପ୍ନହିଁ
ଆମକୁ ଅପେକ୍ଷା କରିଥାଏ
ଦିଗ୍‌ବଳୟଠାରେ.... ।

ଦିନେ କଣ ହେଲା କେଜାଣି
ସମୁଦ୍ରର ଢେଉ ପରି
ଝାଉଁର ମର୍ମର ପରି
ମନ୍ଦିରର ଘର ଘର ନେତ ପରି
ପୁଲକିତ ସ୍ପନ୍ଦନ ପରି
ଅମର ଗନ୍ଧ
ହଠାତ୍ ସ୍ତବ୍ଧ ହୋଇଗଲା
ରାସ୍ତାର ଠିକ୍ ଗ୍ଲୁଢ ଉପରେ.... ।

ଗୋଟିଏ ଗୁପ୍ତ ଆର୍ତ୍ତନାଦରେ
ଦୋହଲି ଉଠୁଥିଲା ରାସ୍ତାର ଗ୍ଲୁଢ
ଆମେ ସ୍ଥିର ହେବାକୁ ଇଚ୍ଛାକରି
ବସିପଡୁଥିଲେ
ସବାଶ-ପାଲିଙ୍କି କମ୍ପା
ଫୁଲରେ ସଜାହୋଇଥିବା କାର୍‌ରେ ।

ରାସ୍ତାର ଡାକ
ପଛରୁ ଶୁଭୁଥାଏ ଅନେକ ଦୂରଯାଏଁ .... ।

ଫେରଚାହିଁଲେ ଦିଶୁଥାଏ
କୋଉଁଠୁ ଆଲୁର କବାଟ ଟିଏ ଦୌଡ଼ିଆସି
ସେ ରାସ୍ତାର ଧୂଳିକୁ
ବୋଳି ହେଉଚି ମୁଣ୍ଡରେ... ।



## ॥ ଉତ୍ସବ ॥

ସ୍ୱପ୍ନ ଆଉ ଜୀବନର
ପ୍ରୀତି ଆଉ ପ୍ରତ୍ୟୟର
ଅନ୍ତରଙ୍ଗ ସମନ୍ୱୟରେ
ଯତ୍ନେ ଗଢ଼ିଥିବା,
ଏଇ ବର୍ଣ୍ଣବର୍ଣ୍ଣୀ ସୃଷ୍ଟିରୁ
ଆଜି ବିଦାୟ ନେବାର
ବେଳ ଆସିଛି.... ।

ଏ କ'ଣ
ଲୁହ ଢାଳିବାର ବେଳ ?
କୋହରେ....
ମୋହରେ....
ଶୂନ୍ୟତାର ଅନୁଭବରେ
ନିଃଶେଷ ହୋଇଯିବାର ବେଳ ?

ଏଠି ତ,
ଓଁ' କାରରୁ
ଓଁକା'ର ବିଦାୟ ନେଲେ
ଓଁକାର ହିଁ ଅବଶିଷ୍ଟ ରହେ ।

ପରପୃଷ୍ଠିତାକୁ
ପରପୃଷ୍ଠିତାରେ ହିଁ
ବସର୍ଜିବାକୁ ହୁଏ....

ପୂଜାରେ
ଅନନ୍ୟ ସୁନ୍ଦର ମେଢ଼ଟି
ଲୁହରେ ନଈରେ
ବୁଡ଼ିଗଲା ବେଳେ
ଏଠି....
ଉତ୍ସବ ହିଁ ପାଳିତହୁଏ ।



# ।। ଲଗାମ୍ ।।

ବେଶ୍ ସହଜ ଠାଣିରେ
ଲଗାମ୍ ଧରି ବସିଥିବା
ସଇସ ହିଁ ଜାଣିଥାଏ
ତାର ଏଇ
ଦୁରନ୍ତ ମନପବନ ଅଶ୍ୱଟିର
ଶକ୍ତି କେତେ ?

ନିମିଷକରେ
ସେ ପ୍ରଦକ୍ଷିଣ କରିପାରେ
ଚଉଦ ବ୍ରହ୍ମାଣ୍ଡ
ପଦାଘାତରେ
ଓଲଟେଇ ଦେଇପାରେ ପୃଥ୍ୱୀ
ବିକଟ ହ୍ରେଷାରବରେ
ଚମକେଇ, ଥରେଇ ଦେଇପାରେ
ସସାଗରା ନିଦ୍ରିତଙ୍କ ଗୁଢ ।

ତାର ଚମତ୍କାର
ଅନମନୀୟ ଗ୍ରୀବାକୁ
ପରମ ସ୍ନେହରେ
ଆପୁଡ଼ିଲ ବେଳେ
ସଇସ ଠିକ୍ ଜାଣିଥାଏ
ଏ ଗ୍ରୀବାର
ଗୋଟିଏ ଝଟ୍‌କା ହିଁ ଯଥେଷ୍ଟ
ତାକୁ ନିଶ୍ଚିହ୍ନ କରିଦେବା ପାଇଁ ।

ସବୁ ଜାଣିଶୁଣି
ଲହୁଣୀରେ ତିଆର
ଲଗାମ୍‌ଟିଏ
ସେ ପିନ୍ଧେଇ ଦେଇଥାଏ ତାକୁ ।

ଏବଂ ନିଶ୍ଚିନ୍ତ ଥାଏ
ଏବେ ଏ ଅଶ୍ୱକୁ
ଚଲାଇ ହେବ
ଅନାୟାସରେ ।

—୦—

## ॥ ବାର୍‌ବାରା ଫରେଷ୍ଟ ॥

ତମ ଘରକୁ ଯିବା ବାଟରେ....

ଝୁର୍‌ ଧୂଳି ଉଡ଼ୁଥିଲା ।
ଆମ୍ବବଉଳ ଓ ଶାଳଫୁଲର ବାସ୍ନାରେ
ମହକୁଥିଲା, ରକ୍ତଚନ୍ଦନ ପରି
ଟକ୍‌ଟକ ଲାଲ୍‌ଧୂଳି ।

ସଉରା ପଲ୍ଲୀର
ଗେରୁବୋଳା ପାଲିସ୍ କାନ୍ଥରେ
ଅଙ୍କା ଝୋଟିଠାରୁ
ସତେଜ ଦିଶୁଥିଲା
ସଉରଣୀର ପରିଚ୍ଛନ୍ନ ଜୁଡ଼ା
ଓ ନକ୍ସାପ କୌତୁକରେ
ଝଲମଲ ତାର ଛନ୍‌ ଛନ୍‌ ମୁଦିଁ ।
ଆଗକୁ ଆଗକୁ
ପ୍ରଢ-ପାଗଳାମି କେଉଁ
ବିଦେଶୀ ପକ୍ଷିଣୀ ପାଇଁ
ଚିଲିକାର ନୀଳଗ୍ରୁଢର
ଗହଳ ମାୟା ସମାନ
ତମର ଆକର୍ଷଣ ।

ମିଲ୍ଟନର
ସିଲଟ୍ ପଷ୍ଟାଠାରୁ ଅଢେମ୍ କବି
କୁଆଁଶ ମନର
ସ୍ୱପ୍ନର ପରଦା ଉପରେ
ବହୁବାର ଆଙ୍କିଥିବା
ଛବିଘରଟିଏ ଆଗରେ
ସତକୁ ସତ ଅଟକିଗଲା ଜଗ୍ ।

ମସୃଣ ସାଗୁଆନ୍ କାଠର
ସୁନାରଙ୍ଗୀ କାନ୍ଥ
ଅସ୍ତସୂର୍ଯ୍ୟର ରଙ୍ଗୀନ୍ ପାଟପିନ୍ଧି
ହସ ହସ
ଠିକ୍ କେଉଁ ସ୍ୱପ୍ନ
ଭଉଜଟି ସେମିତି ।

ବାର ବାଘ,
ତା ପରେ ତମେ
ଅଜାଡ଼ି ଦେଇଗଲ
କୁଞ୍ଜପିଲ୍ଲଙ୍କର ଅର୍ଦ୍ଧାଳିରୁ ମିଠ
ଅସୁମାରି ପକ୍ଷୀଙ୍କ ଗୁଞ୍ଜନ ।
ସଂସାର ଯାତାରେ ଚାଲିବାର
ସଞ୍ଚିତ ଅନୁଭବ
ପଥର ଟଲମଲ ଓ
ବାଉଁଶ କଣ୍ଟାରେ ଭରା
ପାହାଡ଼ ରାସ୍ତାରେ ।
ଦୁଃସାହାସୀ ଅଙ୍କିତ ସହୃତ

ଭେଟ ହେବ
ପାହାଡ଼ ଶୀର୍ଷର ଭଙ୍ଗା ଡାକବଙ୍ଗଳାରେ ।
ଅନାଗତ ଭବିଷ୍ୟତର
ରହସ୍ୟ, ନିଦଣ୍ଡ ସାଗୁଆନ୍ ବଣ
ସମସ୍ତର ସମୁଦ୍ରରେ
ଅଞ୍ଚଳ ସବୁଜ-ପ୍ରତିଶ୍ରୁତି
'ଦାଶଅନ୍ଧା' ଆମ୍ବଗଛ ।
ସବୁ ମିଶାମିଶି ହୋଇ
କେତେ ନିଜର ଲାଗୁଥିଲ ମ !

ବିଶ୍ୱାସ·କର·ବାର୍‌ବାର
ଲେଉଟି ଆସିବା ପରେ,
ମୁଁ ସ୍ପଷ୍ଟ ଦେଖିପାରୁଛି
ବାଘ, ଭାଲୁ ଓ ସାପମାନଙ୍କୁ
ରାସ୍ତାରେ, ଅଫିସ୍‌ରେ
ଏମିତିକି ମୋ ନାମଫଳକ
ଥିବା ଘରର ସଫା ବାରଣ୍ଡାରେ ।
ମତେ ଶୁଭେ
ସେମାନଙ୍କର ହେଣ୍ଟାଳ ଓ ଫୁଁଫୁଁକାର
ଏକଦା ନିରାପଦ ଲାଗୁଥିବା
ମୋ ଫୁଲ ବଗିଚାରେ ।
କାଟବଣା ବାଟୋଇର
ଦୁରୁ ଦୁରୁ ଛାତି ଧରି
ଏବେ ଖାଲି ମୁଁ
ତମକୁ ଖୋଜା ହେଉଛି
ଆତଙ୍କିତ ଆକୁଳ ଆଖିରେ.... ।

—*—

# ନିଶବ୍ଦରେ

ଭିତରେ ଉଚ୍ଛୁଳୁଥିବା ସ୍ୱରକୁ
ଧରିପାରିବାକୁ
ଅଯୋଗ୍ୟ ହୋଇଗଲେ ବୋଲି....
ଶବ୍ଦମାନଙ୍କର ବାହ୍ୟାଡ଼ମ୍ବରକୁ
ମୁଁ ଆଦୌ ସହିପାରେନା ଆଜିକାଲି ।

ଅନ୍ତର୍ଦୃଷ୍ଟି...
ଅବିରାମ ଛାଲିହୋଇଯାଉଥିବା
ମୁକ୍ତାପତ୍ର
ଫୁଲପତ୍ର
ସୁଧାପତ୍ର
ଲକ୍ଷ ଲକ୍ଷ, କୋଟି କୋଟି
କଥା ଭିତରୁ, ଟାଣିଓଟାରି
କଦବା କେମିତି
ସେମାନେ ଅଟକେଇ ରଖନ୍ତି
ଗୋଟିଏ ବା ଦୁଇଟିକୁ....
ଦେଖ ଦେଖ ଅଣିଛୁ ବୋଲି
ଖୁବ୍ ଜୋର୍‌ରେ
କରଘାତ କରନ୍ତି
ଓଠର କବାଟରେ.... ।

ମୋ ଖବର
ପରିପୂର୍ଣ୍ଣ ଶବ୍ଦ ପ୍ରତିମାଟିକୁ
କାଲେ ଏଇଥର
ଦେଖିପାରିବ ସ୍ୱପ୍ନ
ମୁଁ ଆଗ୍ରହରେ
ଓଠ ଖୋଲିବେ....
ଅଥଚ....

କାକୁସ୍ଥ ହୋଇ ଢ଼ଳିପଡ଼ୁଥା'ନ୍ତି
ଅର୍ଦ୍ଧଚେତନ କଥା କେଇଟି ।

କାହାର ଲୁଗା ଚିରିଯାଇଥାଏ
ତ କାହାର କପାଳରୁ
ରକ୍ତ ଝରୁଥାଏ ।

ଓଠର ଦରଜା ଓ
ଆଖିର ଝରକାକୁ
ବନ୍ଦ୍ କରି ଆଣୁ ଆଣୁ
ମୁଁ ଅକୁଳ ହୋଇପଡ଼େ.... ।

ଆହା........
ଏ ହୃଦୟ ବିଦାରକ ଦୃଶ୍ୟ
ନ ଦେଖିଥିଲେ
ଭଲ ହୋଇଥାନ୍ତା ପରା ।

—*—

## ॥ ପ୍ରଳୟାଭାସ ॥

କଥାରେ କଥାରେ....
ଅନବରତ ପ୍ରଗଲ୍‌ଭତାରେ.... ।

ଫୁଲ, ନଆଁ, ବର୍ଷା ।
ଝୁଷା, କଣ୍ଟା ଓ ଲହୁଣୀ ଆଦି
ବେପରବାୟ ଫିଙ୍ଗୁଥିବା
ଓଠ ଦୁଇଟି
ସୁର ଚୁପ୍‌ଚାପ୍.... ।

କିଏ ଜାଣେ
ପ୍ରପାତର ପ୍ରବାହ
ଓ ଝରଣାର ଛନ୍ଦରୁ ଓହ୍ଲାଇଯାଇ
ଶବ୍ଦର କେଉଁ ପ୍ରଳୟକୁ
ସେ ସମ୍ଭାଳି ରଖିଛୁ
ତା'ର ଏଇ ଅମାପ ନୀରବତାରେ !!

—*—